ନୀୟନ୍ତେ ପଥିକୈଃ କଥଂ କଥମପି ଧ୍ୟାନାବଧାନକ୍ଷଣ—
ପ୍ରାପ୍ତପ୍ରାଣସମାସମାଗମରସୋଲ୍ଲାସୈରମୀ ବାସରଃ ।।
(ଗୀତଗୋବିନ୍ଦ — ଜୟଦେବ)

ଶୁଭେ ଭ୍ରମର ଝଙ୍କାର କି ଗୁଣ ଟଙ୍କାର
ଚମକି ପଡ଼ିଲା ପୁଣି ପୁଣି ।
ଫିଙ୍ଗିଦେଲା ମୋତିମାଳା ଫଣୀ ବୋଲି ବାଳୀ
ଗରୁଡ ନାମକୁ ଶୁଣି ଶୁଣି ।।
(ଦଶପୋଇ — ଉପେନ୍ଦ୍ର ଭଞ୍ଜ)

କମଳକୁମୁଦ କୋକନଦ ନୀଳୋତ୍ପଳ
ମଧୁପାନେ ମତ୍ତ ହୋଇ ଭ୍ରମନ୍ତି ଭ୍ରମର ।
ଚଉପାଶେ ବେଢ଼ିଛନ୍ତି ପୁଷ୍ପିତତରୁଚୟ
ବିରହୀଜନଙ୍କୁ ସେ କରାଉଛନ୍ତି ଭୟ ।।
(ବିଚିତ୍ର ରାମାୟଣ—ବିଶି ଖୁଣ୍ଟିଆ)

ଭ୍ରମର ଝଙ୍କାର କି ଗୁଣ ଟଙ୍କାର ଶୁଣି ଚମକିଲେ ବିରହୀ
ଟଳିଲେ ଅବଶେ ଭଜିଲେ ମଦନେ ଚଳିଲେ ଘରକୁ ନ କହି ।
କ୍ରମଶେ, ପୁଷ୍ପିତ ହୋଇ ତରୁରାଜି
ଗନ୍ଧବହ ଗନ୍ଧ ଘେନି ବହିବାରୁ ବିଯୋଗୀ ଧୀର ଗଲା ଭାଜି ।।
(ଶଶିରେଖା—ପଦ୍ମନାଭ ଶ୍ରୀଚନ୍ଦନ)

ରାଧା ଏଠାରେ ପ୍ରୋଷିତଭର୍ତ୍ତୃକା ନାୟିକା —

ନାନାକାର୍ଯ୍ୟବଶାଦ୍‌ଯସ୍ୟାଃ ଦୂରଦେଶଂ ଗତଃ ପତିଃ ।
ସା ମନୋଭବଦୁଃଖାର୍ତ୍ତା ଭବେତ୍ ପ୍ରୋଷିତଭର୍ତ୍ତୃକା ।।
(ସାହିତ୍ୟଦର୍ପଣ—ବିଶ୍ୱନାଥ କବିରାଜ)

କୃଷ୍ଣ ବିରହରେ ବିରହିଣୀ ରାଧା ନୟନରେ ଅଶ୍ରୁ :—

ତୁମ୍ଭ ବିଚ୍ଛେଦରୁ କରି          ଯେବେଠୁ ବିରହ ନାଥ
ନୟନୁ ଲୋତକ ବହିଯାଇ

ମିଶଇ ଯମୁନା ସଙ୍ଗେ    ଏଣୁ ସେ ବଢ଼ଇ ବେଗେ
କୃତାନ୍ତ ଭଗିନୀ ଦୋଷ ନାହିଁ ହେ ଦୀନବନ୍ଧୁ ।
(ମଥୁରାମଙ୍ଗଳ – ଭକ୍ତଚରଣ)

ଶ୍ରୀଶ୍ରୀ ଗୋକୁଳମଣ୍ଡଳୀ ପଶୁକୁଳଂ ଶଷ୍ପାୟ ନ ସ୍ପନ୍ଦତେ
ମୂକାଃ କୋକିଳପଙ୍କ୍ତୟଃ ଶିଖୀକୁଳଂ ନ ବ୍ୟାକୁଳଂ ନୃତ୍ୟତି ।
ସର୍ବେ ତ୍ୱଦ୍ବିରହାନଲେନ ସତତଂ ହା କୃଷ୍ଣ ! ଦୈନ୍ୟଂ ଗତାଃ
କନ୍ତ୍ୱେକା ଯମୁନା କୁରଙ୍ଗନୟନା-ନେତ୍ରାମ୍ବୁଭିର୍ବର୍ଦ୍ଧତେ ॥
(ଉଦ୍ଧବ ସନ୍ଦେଶ—ରୂପଗୋସ୍ୱାମୀ)

ବହୁଯେ ଥିବ ଝରନ୍ତରେ ନୟନକମଳୁଁ ଜୋତଜ
ବହୁ ଯେ ଥିବ ମୋ ବହୁନେ ହୃଦୟ କୁସୁମ-ଶାୟକ
(ବିଚିତ୍ରରାମାୟଣ – ବିଶ୍ୱନାଥ ଖୁଣ୍ଟିଆ)

ଯେଜିବ ପୁନାଗ ପୁନାଗ ପୁନାଗ ପୁନାଗ ଦେଖି ଚମକିବ,
ଘନକେଶୀ ଅଙ୍ଗ ପରାସେ ପରାସେ ପରାସେ ପରା ସେ ହୋଇବ,
କୋକିଳ, ଘୋଷୁଥିବ ପ୍ରୀତି ନକର,
ଘନେ ନାଶୁଥିବ କଦମ୍ବ କଦମ୍ବ କଦମ୍ବ କଦମ୍ବ ଗତିର ।୯।

ଅନ୍ୱୟ—ରେ କୋକିଳ ସେ ପୁନାଗ (ଶ୍ୱେତକମଳ) ପୁନାଗ (କୁସୁଅନା) ଯେଜିବ, ପୁନାଗ (ଅଣ୍ଡିରହାଣ୍ଡି) ଓ ପୁନାଗ (ପୁରୁଷଶ୍ରେଷ୍ଠ)ଙ୍କୁ ଦେଖି ଚମକିବ । ଘନକେଶୀ ଅଙ୍ଗପରା ସେ (କୃଶ) ପରାସେ (ଦୁଃଖରେ) ପରାସେ (ବେଦନାଯୁକ୍ତ) ପରା ସେ (ରାଧା) ହୋଇବ । ସେ ପ୍ରୀତି ଘୋଷୁଥିବ । କଦମ୍ବ (ଗଜ) ଗତିର କଦମ୍ବ (ଧୀର) କଦମ୍ବ (କଦମ୍ବଫୁଲ) କଦମ୍ବ (ସମୂହ) ନାଶୁଥିବ ।

ଅର୍ଥ—ରେ କୋକିଳ ସେ ବିରହତାପ ନାଶାର୍ଥେ ଶ୍ୱେତକମଳ ଓ କୁସୁଅନା ଫୁଲ ଧରିଥିବ; ଅଣ୍ଡିରହାଣ୍ଡି (ମୁଁ ବ୍ରଜପୁରର କାଳିଆହାଣ୍ଡି) ଓ ପୁରୁଷଶ୍ରେଷ୍ଠଙ୍କୁ ଦେଖିଲେ (ମୋ କଥା ମନେ ପକାଇ) ଚମକି ପଡ଼ିବ । ଜଳଦକେଶୀର ଶରୀରକୁ ଯେ (ବିରହ) ପରା ଦୁଃଖଦାୟୀ ଓ ବେଦନାଦାୟୀ

ବୃନ୍ତଘାତ ପର ହେବ । ସେ ସର୍ବଦା ପ୍ରୀତି ଲେଉଥିବ । ସେ ଗଜଗମନାର ଧୈର୍ଯ୍ୟ ସମୂହକୁ କଦମ୍ବଫୁଲ ଘନେ (ବହୁ ପରମାଣରେ) ନାଶ କରୁଥିବ ।

ବିରହତାପନାଶାର୍ଥେ ପଦ୍ମଫୁଲ ଧାରଣ:—

ଧାରୟଦ୍ଭିଃ କୁସୁମୋର୍ମୀଣାଂ
ପାରୟଦ୍ଭିଃ ବାଧିରୂଂ ଜନାନ୍ ।
ଶାଖିଭିଃ ସ୍ୱା ହୃତା ଭୂୟୋ
ହୃଦୟାନାମୂଦେଜୟଦ୍ଭିଃ ॥

(ଭଟ୍ଟୀକାବ୍ୟ—ଷଷ୍ଠ ସର୍ଗ)

କମଲେ ନଧାସ୍ୟ କମଲଂ କଲୟନ୍ତୀ କମଲବାସିନଂ କମଲେ ।
କମଲଯୁଗ ଦ୍ୱିଭୁଜଂ କମଲଂ କମଲେନ ବାରୟତି ॥

(ସୁଭାଷିତରତ୍ନଭଣ୍ଡାଗାର)

ପ୍ରିୟ ସଙ୍ଗମ ଲଗି ପ୍ରିୟାର ପ୍ରୀତିଚନ୍ତା:—

କଥଂ ସ ବଲ୍ଲଭଃ ପ୍ରାପ୍ୟଃ
କିଂ କୁର୍ଯାଦସ୍ୟ ସିଦ୍ଧୟେ ।
କଥଂ ଭବେଦସୌ ବଶ୍ୟ
ଇତି ଚନ୍ତା ଭବେଦ୍ୟଥା ॥

(ଶୃଙ୍ଗାରତିଳକ – କାଳିଦାସ)

ନ ଗୃହ୍ଣୁଥିବ ସେ ଗଣିକା ଗଣିକା ଗଣିକା ଗଣିକା-ଗାମିନୀ,
ନୟନ ଅମଳ ନଳୀନ ନଳୀନ ନଳୀନ ଦିଶୁଥିବ ପୁଣି,
କୋକିଳ, ନଷ୍ଟେ ଶୋଇଥିବ ଅବନୀ
ନ ଘେନ ତିଳକ ତିଳକ ତିଳକ ତିଳକ ତିଳକ-ଗାମିନୀ ।୫।

ଅନ୍ୱୟ—ସେ ଗଣିକା (ଗଜ) ଗାମିନୀ, ଗଣିକା (ବେଶ୍ୟା)କୁ ଗଣିକା (ଯୁଇଫୁଲକୁ) ଓ ଗଣିକାକୁ (ତର୍କାଶ = ତର୍କ + ଅଶ ଅର୍ଥାତ୍ ଯଥା ତର୍କ କରେ ଯେ, ଏମନ୍ତ ଲଳିତା)କୁ ଗ୍ରହି ନ ଥିବ । ଅମଲ (ମଳରହିତ) ନଳୀନ (ନୀଳ) ନଳୀନ (ପଦ୍ମ) ନୟନରେ ନଳୀନ (ଜଳ) ପୁଣି ଦେଖାଯାଉଥିବ । ସେ ନଷ୍ଟସ୍ଥ ଭୂମିରେ ଶୋଇଥିବ । ତିଲକ (ଶ୍ରେଷ୍ଠ) ଗମନା, ତିଲକ

(ଢଳେଢ଼େଲେ) ଢଳକ (ଚନ୍ଦନ) ଢଲକ (ସିନ୍ଦୂର) ଢଲକ (ମଥାମଣି) ଲଗାଇ ନ ଥିବ ।

ଅର୍ଥ—ରେ କୋକିଲ, ସେ ଗଜଗମନା ବେଶ୍ୟାକୁ (ତାଠାରେ ସମ୍ଭୋଗଚିହ୍ନ), ଦୂଇଫୁଲକୁ ଓ ଲଜ୍ଜାକୁ ଗ୍ରହି ନ ଥିବ, ତାର ପବିତ୍ର ନୀଳପଦ୍ମସମ ନୟନରେ ଜଳ ଦେଖାଯାଉଥିବ; ସେ ଶ୍ରେଷ୍ଠଗମନା (ଯାହାର ଗତି ଅତୁଳନୀୟ), ଢଳେଢ଼େଲେ ଚନ୍ଦନ, ସିନ୍ଦୁର ଓ ମଥାମଣି ନ ଲଗାଇ ଭୂମି ଉପରେ ଶୋଇଥିବ ।

ବିରହିଣୀର ବେଦନାବସ୍ଥା: –

ଵଣି ଵଣି କରତ  ସଜଲକଣଜାଲମ୍
ନୟନନଲିନମିବ  ବିଗଳିତନାଳମ୍ ।।
(ଗୀତଗୋବିନ୍ଦ—ଜୟଦେବ)

କି ବୟସରେ ପଡ଼ିଲା କି ଦଶା,
କାନ୍ତି କି ହେଲା କେତକୀ ସଦୃଶା;
ଅଶ୍ରୁ ପଡ଼ନ୍ତେ ପୋଛୁ ଦେଉଥିବ,
ଝଲକେ ଜଳ ଗଣ୍ଡ ନ ଛୁଇଁବ;
ଯେ ହେମରୁ ଗୋରୀ
ଏ ବେଳେ ଜଣାଯାଉଥିବ ପରୀ ।
(ରସଲେଖା – ଉପେନ୍ଦ୍ର ଭଞ୍ଜ)

ଅତି କାତରେ ନିଜ କାନ୍ତରେ ଶଙ୍କାଚିତ୍ତରେ ଲଭି
କୋପ ଅଙ୍କୁର ମହାମୁକୁର କଳା ଚକୁର ଶୋଭି ।
ରତି ଅବେଶୀ ରତିକବେଶୀ ଗଣ୍ଡେ ନିବେଶି କର
ନୟନନୀରରୁହରୁ ନୀର ତେଜିଲା ନିରନ୍ତର ।।
(ଲାବଣ୍ୟବତୀ—ଉପେନ୍ଦ୍ର ଭଞ୍ଜ)

ନ ରହୁଛି ନିଜ ନୟନରୁ ଆଉ ନୀର
ନ ଉଠୁଛି ଅବନୀ ଶୟନୁଁ ନିରନ୍ତର ।।
(ଲାବଣ୍ୟବତୀ – ଉପେନ୍ଦ୍ରଭଞ୍ଜ)

ଶ୍ରାବଣ ବାରିଧାର ପରି ନେତ୍ରକ
ଶ୍ରବି ଢଳିଯାଉଛି ପ୍ରୀତି-ପ୍ରତୀକ ॥
(ଶ୍ୟାମରସୋତ୍ସବ—ବ୍ରଜନାଥ ବଡ଼ଜେନା)

ମୋ ହୃଦଚନ୍ଦ୍ରିକା ଛନ୍ଦି ବସି ଏକା
କାନ୍ଦୁଥିବ ମୋତେ ଧ୍ୟାୟି ॥
(ତପସ୍ୱିନୀ—ଗଙ୍ଗାଧର ମେହେର)

ବାମ କରପଦ୍ମେ ଗଣ୍ଡ ନିବେଶି
ବସିଛି ମଉନେ ଭ୍ରମରକେଶୀ
ସନ୍ତାପ-କାଳିମା ଖେଳେ ବଦନେ
ଗ୍ରାସେ କି ବହ୍ନି କୁମୁଦ-ରଞ୍ଜନେ
ମସ୍ତକ କରି ନମନ
ସଫରୀ-ନୟନୁଁ ଝରେ ଅଶ୍ରୁବିନ୍ଦୁ
ମୁକ୍ତା କି ଉଗାରେ ମୀନ ॥
(ବ୍ରଜବନ୍ଧୁ ସ୍ୱରନ୍ଧ୍ର — ମଣିଚରଣ ମହାପାତ୍ର)

ଅନ ଅନ ନେତ୍ରେ ଚାହିଁ
ଥକା ଥକା ହୋଇ କହି
ଥପ ଥପ ବାରି ବକ୍ଷେ ପଡ଼େ ଝରି
ଥୟ ନ ପାରଇ ରହି ସେ
ଥର ଥର ଥରେ ଦେହ ।
(ସପ୍ତାସ୍ୱର୍ଗନଶ୍ରୁଣୀ — ଗାୟକ ଶିରୋମଣି ନିରଞ୍ଜନ କର)

ନିଶିଦିନ ବରସତ ନୈନ ହମାରେ
ସଦା ରହତ ପାବସ ଋତୁ ହମ ପୈ
ଜବତେ ସ୍ୟାମ ସିଧାରେ ॥
ଦୃଗ ଅଞ୍ଜନ ଲଗତ ନାହିଁ କବହୁଁ
ଉର କପୋଲ ଭୟେ କାରେ
କଞ୍ଚୁକି ନାହିଁ ସୁଖତ ସୁନୁ ସୁନୁ ସଜନି
ଉର ବିଚ ବହତ ପନାରେ ॥
(ସୂରସାଗର – ସୂର ଦାସ)

O she says nothing sir,
But weeps and weeps;
And now falls on her bed
And then starts up.
(Romeo and Juliet-William Shakespeare)

ବିରହରେ ନାୟିକାର ଭୂମି ଶୟନ:—

ଅଥ ସା ପୁନରେବ ବିହ୍ୱଳା ବସୁଧାଲିଙ୍ଗନଧୂସରସ୍ତନୀ ।
ବିଲଲାପ ବିକୀର୍ଣ୍ଣମୂର୍ଦ୍ଧଜା ସମଦୁଃଖାମିବ କୁର୍ବତୀ ସ୍ଥଳୀମ୍ ॥
(କୁମାରସମ୍ଭବ—କାଳିଦାସ)

କେଉଁ ସୁନ୍ଦରୀ ଦଶାଭୂତକୁ ଗଣ୍ଡ ଧରି ଧରଣୀ ଶୟନ କରିଛୁ
କଣ୍ଠେ ଜୀବନ ବନପୁଷ୍ପ ନୟନ ଘନ ଘନ ନିଶ୍ୱାସକୁ ଛାଡ଼ୁଛୁ ରେ
ସହଚରି ! ପକାଇ ଆପଣା ଅଙ୍କର
ଲେଉଡ଼ିଲେ ନ ଲଗାଇ କର
ଯେହ୍ନୁ ଏଡ଼େ ଦୁର୍ବଳ ଝଞ୍ଜାନଳ ପ୍ରବଳ ଉଡ଼ିଯାଇଛି ଯତ୍ନ କର ॥
(ଲାବଣ୍ୟବତୀ – ଉପେନ୍ଦ୍ରଭଞ୍ଜ)

ଏମନ୍ତ କାଳରେ ନୀରଜାନନୀ ନରବରଜା
ପଲଙ୍କେ ପଲଙ୍କେ ନ ରହି କଲା ସେ ମହୀ ଶଯ୍ୟା
(କୋଟିବ୍ରହ୍ମାଣ୍ଡସୁନ୍ଦରୀ - ଉପେନ୍ଦ୍ରଭଞ୍ଜ)

ଧରା ଶୟନରେ ସାରିଲି ଦିନ
ଧରାଜନ ପରି ମନ ଭ୍ରମନ
ଧବଳକର ପରି ଦହେ ତନୁ
ଧର ଧର ମିଛ ଜାତ ବଦନୁ
ଧରିବ କେ ଗ୍ରନ୍ଥ
ଧରାମଣ୍ଡଳାର ଦେଖି ବିପତ୍ତି ॥
(ବିଦଗ୍ଧ ଚିନ୍ତାମଣି - ଅଭିମନ୍ୟୁ)

ଶୁଣିଣ ବିରହ ଗୋପର ନାରୀ
ହା ହା କୃଷ୍ଣ ବୋଲି ଭୂମିରେ ପଡ଼ି ॥
(ଗୋପୀଭାଷା – ଦନାଇ ଦାସ)

ବିମ୍ବାଧରୀ ଧରିତ୍ରୀରେ ଲୋଟଇ ବିକଳେ
କେବେ ଛଳ ଛଳ ନୀର ନୟନ ଯୁଗଳେ
ରମ୍ୟ କରକରଦନା
ଡାକେ ଧର ଧର ଧର ହୋଇ ଅତି ଦୀନା ॥
(ସତ୍ୟଭାମା—ଗୋଲୋକଚନ୍ଦ୍ର ପ୍ରଧାନ )

ବିରହିଣୀର ଚନ୍ଦନ ଓ ମଥାମଣି ତ୍ୟାଗ: —
ରଜନିର୍ମେ ଦବଦାହୟତେ ହିମରୁଚିଶ୍ଚଣ୍ଡାଂଶୁଲକ୍ଷାୟତେ
ତାରା ପତ୍ରତରପି ପ୍ରଦୀପ୍ତବଡ଼ବାବହ୍ନିସ୍ଫୁଲିଙ୍ଗାୟତେ ।
ଧୀରେ ଦକ୍ଷିଣମାରୁତୋଽପି ଦହନଜ୍ୱାଲାବଲୀତାୟତେ
ହା ହା ଚନ୍ଦନବିନ୍ଦୁରଦ୍ୟ ଜଳବତ୍ ପଞ୍ଚାଶରଙ୍ଗାୟତେ ॥
(ସୁଭାଷିତରତ୍ନଭାଣ୍ଡାଗାର)

କହିବାରେ ଆଉ ଅଛି କି ସେ ରାମା ରହିବାରେ ନାହିଁ ଜୀବନ
ସହିବାରେ ନାହିଁ ଚନ୍ଦନ ସୁମନ ବହିବାରେ ନାହିଁ ମଣ୍ଡନ
କୃଷ୍ଣ ହେ, ଅହି ସମହାରେ ମଣୁଛି
ନୋହିବାରେ ତୁମ୍ଭ ଦର୍ଶନ ବଶରୁ ଦହିବାରେ କାମ ଲଗିଛି ॥
(ବ୍ରଜବିହାର – କୃପାସିନ୍ଧୁ ଦାସ)

ଅଳକର ଝଲକ ପକାଇ ପୋଛି
ଅଳକାର ସୁମନ ନ ରଖେ କିଛି ।
(ଅମ୍ବିକା ବିଳାସ—ବଳଭଦ୍ର ଭଞ୍ଜ ଦେବ)

ଚତୁର୍ଥୀ ଚନ୍ଦ୍ରମା ଚନ୍ଦ୍ରମା ଚନ୍ଦ୍ରମା-ସଦନ ଭାନୁ ସମ ଦେଖି
ଲୁହିଁଲେ ଭରିବ ମୋ ନାମ ତାରକ ତାରକ ତାରକ ମଣ୍ଡ୍ରମା
କୋକିଳ, ଚତୁରମୁଖୀ କେହ୍ନେ ବଞ୍ଚିବ
ଲୁହିଁଲେ ମଦନ ମଦନ ମଦନ ମଦନ ମଦନ ଦହିବ ॥ ୬ ॥

ଅନ୍ୱୟ—ରେ କୋକିଳ, ମୋ ଚତୁର୍ଥୀ ଚନ୍ଦ୍ରମା (ଚନ୍ଦ୍ର) ଚନ୍ଦ୍ରମା (ନକ୍ଷତ୍ର) ଓ ଚନ୍ଦ୍ରମା ସଦନ (ଚନ୍ଦ୍ରଶାଳାପୁର)କୁ ସୂର୍ଯ୍ୟ ସମାନ ମନେ

କରୁଥିବ । ସେ ତାରକ (ମୁକ୍ତା) ମଣ୍ଡନା ଅରେ ମୋତେ ଗ୍ରହି ଦେଲେ ତା ନାମ ତାରକ (ଭେଳା) କରି ମୋତେ ତାରକ (ଉଦ୍ଧାରକାରୀ ବା ଉଦ୍ଧାର) କରିଦେବ । ସେ ସୁନ୍ଦରବଦନା କପରି ବଞ୍ଚିବ । ମଦନ (ବସନ୍ତ) ମଦନ (ଭ୍ରମର) ମଦନ (ବକୁଳ ଗଛ ବା ଆମ୍ବ ବଉଳ) ମଦନ (ଖଞ୍ଜନପକ୍ଷୀ)କୁ ଦେଖିଲେ ତାକୁ ମଦନ (କନ୍ଦର୍ପ) ଦହିବ ।

ଅର୍ଥ—ରେ କୋକିଳ, ମୋ ଚତୁରୀ ସଖୀ ମୋ ବିରହରେ ଚନ୍ଦ୍ରକୁ, ପୂର୍ବ ନଖକ୍ଷତକୁ ଓ ଚନ୍ଦ୍ରଶାଳାପୁରକୁ ସୂର୍ଯ୍ୟପରି ଉତ୍ତପ୍ତ ମନେ କରୁଥିବ । ସେ ମୁକ୍ତାହାରମଣ୍ଡନା ଅରେ ମାତ୍ର ଗ୍ରହିଦେଲେ ତାର କାମଭେଳାରେ ମୋତେ ଉଦ୍ଧାର କରନ୍ତା । ସେ ବସନ୍ତ, ଭ୍ରମର, ବକୁଳଗଛ ବା ଆମ୍ବ ବଉଳ ଓ ଖଞ୍ଜନ ପକ୍ଷୀଙ୍କୁ ଦେଖିଲେ ତାକୁ କନ୍ଦର୍ପ ଦହନ କରିବ । ତେଣୁ ସେ କପରି ବଞ୍ଚିବ ।

ସଖୀ ଚତୁରୀ ନାୟିକା: –

ଘନେ ଝଙ୍କାର କରୁଁ କେଳସର
ଭୃଙ୍ଗ ଚୁମ୍ବନ ଦେବା ସାରସର
ମାରୁଁ ଯାଇ ଆନ ଫୁଲରସର
ସିଦ୍ଧାଣୀ ପାଇ ଏତେ ଅବସର
କହିଲା ହାସର
ଏହି ସେବେହି ସିନା ପୁରୁଷର ॥
(ରସିକହାରାବଳୀ – ଉପେନ୍ଦ୍ର ଭଞ୍ଜ)

ଚନ୍ଦ୍ର ଦର୍ଶନରେ ବିରହିଣୀର ଖେଦ: –

ନିନ୍ଦତି ଚନ୍ଦନମିନ୍ଦୁକିରଣମନୁବିନ୍ଦତି ଖେଦମଧୀରମ୍
ବ୍ୟାଳନିଲୟମିଳନେନଗରଳମିବ କଳୟତି ମଳୟସମୀରମ୍ ॥
(ଗୀତଗୋବିନ୍ଦ—ଜୟଦେବ)

କାନ୍ତୋ ଯାସ୍ୟତି ଦୂରଦେଶମିତି ମେ ଚିନ୍ତାପରଂ ଜାୟତେ
ଲୋକାନନ୍ଦକରୋ ହି ଚନ୍ଦ୍ରବଦନେ ! ବୈରାୟତେ ଚନ୍ଦ୍ରମାଃ ।

କଣ୍ଠାସ୍ଥଂ ବ୍ରତନୋଢ କୋକିଳକଳାଳାପେ ବଳାପୋଦସ୍ଥଂ
ପ୍ରାଣାନେବ ହରନ୍ତି ହନ୍ତ ନିତରାମାରାମମନ୍ଦାନିଳାଃ ।।
(ପୁଷ୍ପବାଣ ବିଳାସ—କାଳିଦାସ)

ଅଥ ପଥିକବଧୂଦହନଃ
ଶନୈରୁଦଭୂନ୍ନିଶାକରାଲୋକଃ
କୁମୁଦପ୍ରବୋଧଦୂତୋ ବ୍ୟସନ –
ଗୁରୁସ୍ତବକାଙ୍କାଣାମ୍ ।।
(ସୁଭାଷିତ ରତ୍ନଭଣ୍ଡାଗାର)

ସୁଧାକର ସୁଧାକର ସୁଧାକର ସୁର
ରମଣୀ ରମଣି ର ମଣିତ କାରାପୁର ।।
(ପ୍ରେମସୁଧାନିଧି—ଉପେନ୍ଦ୍ରଭଞ୍ଜ)

ନ ଲୋଡ଼ଇ ବଧୂ ବଧୂ ଲୋଡ଼େ ଚନ୍ଦ୍ରମୁଖୀ
ନ ସୁରେ ସୁରେ ସେ ସୁରେ ପଦ ଝଷ୍ଟାନାକ୍ଷୀ
ଦଅ ନ ଦଅ ତ ଦେଖା
ଅମୁଖୀ ଶୁଖିଗଲାଣି ନାହିଁ ପଦେ ଲାକ୍ଷା ।
(ସତ୍ୟଭାମା – ଗୋଲୋକଚନ୍ଦ୍ର ପ୍ରଧାନ)

ନାରୀ ଅଙ୍ଗରେ ନଖକ୍ଷତ:—

ଘଟୟତ ସୁଘନେ କୁଚଯୁଗ-ଗଗନେ ମୃଗମଦରୁଚିରୁଷିତେ
ମଣିସରମମଳଂ ତାରକପଟଳଂ ନଖପଦଶଶିଭୂଷିତେ ।।
(ଗୀତଗୋବିନ୍ଦ—ଜୟଦେବ)

ଅର୍ଦ୍ଧେନ୍ଦୁସଙ୍କାଶମିଦଂ ନଖକ୍ଷତ –
ମର୍ଦ୍ଧେନ୍ଦୁସଂଜ୍ଞଂ କଥିତଂ ସମାସତଃ ।
କକ୍ଷାନିତମ୍ବସ୍ତନପାର୍ଶ୍ୱମଧ୍ୟେ
ଦାତବ୍ୟମେତନ୍ତୁ କରଜଂ ସଦୈବ ।
(ପଞ୍ଚସାୟକ – କବିଶେଖର ଜ୍ୟୋତିରୀଶ୍ୱର)

ସ୍ୱୟମ୍ଭୂଃ ଶମ୍ଭୂରମ୍ଭୋଜଲୋଚନେ ତ୍ୱତ୍ପୟୋଧରଃ
ନଖେନ କସ୍ୟ ଧନ୍ୟସ୍ୟ ଚନ୍ଦ୍ରଚୂଡ଼ୋ ଭବିଷ୍ୟତି ।।
(ସୁଭାଷିତରତ୍ନଭଣ୍ଡାଗାର)

ବସନ୍ତରେ ବିରହିଣୀର କାମତାପ ବୃଦ୍ଧି:—

ବସନ୍ତେ ବାସନ୍ତୀ କୁସୁମସୁକୁମାରୈରବୟବୈ—
ର୍ଭ୍ରମନ୍ତ କାନ୍ତାରେ ବହୁବିହିତକୃଷ୍ଣାନୁସରଣାମ୍ ।
ଅମନ୍ଦଂ କନ୍ଦର୍ପଜ୍ୱରଜନିତଚିନ୍ତାକୁଳତୟା
ଚଳଦ୍ ବାଧାଂ ରାଧାଂ ସରସମିଦମୂଚେ ସହଚରୀ ॥

(ଗୀତଗୋବିନ୍ଦ – ଜୟଦେବ)

ବସନ୍ତେ ବାସନ୍ତୀ ମୃଦୁମଧୁରକାନ୍ତିର୍ବିଚକିତେ
ସମୁଚ୍ଛନ୍ନଂ ଛନ୍ନଂ ହରିବିରହିଣୀ ଚିତ୍ତମନଶମ୍ ।
ପ୍ରସୂନୈରାକୀର୍ଣ୍ଣଂ ରୁଚିରତରବୃନ୍ଦାବନମିଦଂ
ବିଲୋକ୍ୟେମଂ କାଳଂ କଥମିହ କୃଶାଙ୍ଗୀ ବିଗମୟେତ୍ ॥

(ହଂସଦୂତ—ରୂପଗୋସ୍ୱାମୀ)

ପ୍ରଫୁଲ୍ଲ-ଚୂତାଙ୍କୁର-ତୀକ୍ଷ୍ଣ-ସାୟକୋ
ଦ୍ୱିରେଫମାଳା—ବିଲସଦ୍ଧନୁର୍ଗୁଣଃ ।
ମନାଂସି ବେଦ୍ଧୁଂ ସୁରତପ୍ରସଙ୍ଗିନାଂ
ବସନ୍ତଯୋଧଃ ସମୁପାଗତ ପ୍ରିୟେ !

(ଋତୁସଂହାର – କାଳିଦାସ)

ମଳୟ ଶିଖରୀ ଶିରୀ ଘେରି ଜାତ ବହିଲାଣି ମନ୍ଦ ସମୀର
ସୁମନାକୁ ବାସ ଘେରାଇ ନେବଟି ବୋଲି କହିଲାଣି ଭ୍ରମର
କେଶର, କେଶରେ ହେଲେଣି ମଞ୍ଜୁଳ,
କେଶରେ ମଣ୍ଡନ କରିବା ଭଳିରେ ଫୁଟିଲେଣି କେତେ ବନ୍ଧୁଳ ।
ମଲ୍ଲୀମାଧବୀ ମକରନ୍ଦ ମାଧବୀ ହେଲେଣି ବାନ୍ଧବ କାନନେ
ରୂପାର ନାଶ ବୃଦ୍ଧି ହାସ ପ୍ରକାଶ କଲେଣି ପଙ୍କଜ ଆନନେ,
ହେଲାଣି, ଚର୍ଚ୍ଚରୀ ପ୍ରକଟ କଟକେ
ଅତନୁ ଫୁଲର ବିଶିଖ କାର୍ମୁକ ଘେନି ଚଢ଼ିଲାଣି କାମୁକେ ।

(ଲାବଣ୍ୟବତୀ – ଉପେନ୍ଦ୍ର ଭଞ୍ଜ)

ମଳୟ ମରୁତ ଦେଖ ମନ୍ଦେ ମନ୍ଦେ ବହିଲା
ଏ ବସନ୍ତକାଳେ ମୋର କାନ୍ତ ସଙ୍ଗ ନୋହିଲା ।

କପର ଆରେ ସଜନ ! ବଞ୍ଚିବି ଏବେ ରଜନୀ
ନିରନ୍ତର ସ୍ମରାନଳ ମୋ ତନୁକୁ ଦହିଲା ॥
(ଗୋପାଳକୃଷ୍ଣ ପଦ୍ୟାବଳୀ)

ସୁରତଲାଳସୀ କାମୀ ପରାଣ
ବିଦ୍ଧ ଆଶେ ଯୋଦ୍ଧା ବସନ୍ତ ଜାଣ
ପ୍ରଫୁଲ୍ଲ ଆମ୍ର ମୁକୁଳ ତା ଶର
ଅଳିପଂକ୍ତି ଧନୁର୍ଗୁଣ ଆବର
ଆଗତ ମହୀରେ ପ୍ରିୟା
ଦେଖି ବସନ୍ତର ଏହି ଯୋଦ୍ଧୃବେଶ ବିଚଳିତ କାମୀ ହିଆ ।
(ଋତୁସଂହାର—ଦରଦୀ କବି)

ପୁଷ୍ପିତ ଆଜ ବୃନ୍ଦାବନ
ଉଚ୍ଛନ୍ନ ଗୋପୀବୃନ୍ଦମନ
ନ ସ୍ଫୁରେ ବାଣୀ ଅଧରପୁଟେ
ଅନ୍ତରେ ଖିବଜ୍ଆର ଛୁଟେ
ଦିବସ ରଜନୀ ଯାପିବୁ କେମନ୍ତେ ଏ ମଧୁମାସେ
ରସରାଜ ଆଜ ନାହିଁରେ ସଜନ ଆମ୍ଭ ପାଶେ ॥
(ହଂସଦୂତ—ଦରଦୀ କବି)

ଦେଖ ହୁଁ ତାତ ବସନ୍ତ ସୁହାବା
ପ୍ରିୟାହିନ ମୋହି ଭୟ ଉପୁଜାବା ॥
(ରାମଚରିତମାନସ—ତୁଳସୀ ଦାସ)

ବିରହରେ ଭ୍ରମର ଗୁଞ୍ଜନର ପ୍ରଭାବ: —
ଅଧିଗତକାମଧୁରାଗାଦମେତ୍ୟ
ଭ୍ରମରପଙ୍କ୍ତିଲିକା ମଧୁରାଗାନ୍ତ
ପୀତ୍ୱୋଜ୍ଝିକା ମଧୁର ଗା ଦ୍ରୁତମକୃନ୍ତ
ତତଃ ଶ୍ରିୟୋଽଧିକା ମଧୁରାଗାନ୍ତ ॥
(ନଳୋଦୟ—କାଳିଦାସ)

ବସନ୍ତ ଋତୁଶ୍ରେଷ୍ଠ :—

ବୃହତ୍ସାମ ତଥା ସାମ୍ନାଂ
ଗାୟତ୍ରୀ ଛନ୍ଦସାମହମ୍ ।
ମାସାନାଂ ମାର୍ଗଶୀର୍ଷୋଽହ-
ମୃତୂନାଂ କୁସୁମାକରଃ ।।

(ଶ୍ରୀମଦ୍‌ଭଗବଦ୍‌ଗୀତା)

ବସନ୍ତରେ ମଦନର ପ୍ରକୋପ —

ଉନ୍ମଦମଦନମନୋରଥପଥିକବଧୂଜନଜନିତବିଳାପେ
ଅଳିକୁଳସଂକୁଳକୁସୁମସମୂହନିରାକୁଳବକୁଳକଳାପେ ।।

(ଗୀତଗୋବିନ୍ଦ—ଜୟଦେବ)

ଲତାକୁଞ୍ଜଂ ଗୁଞ୍ଜନ୍ ମଦବଦଳିପୁଞ୍ଜଂ ଚପଲୟନ୍
ସମାଲିଙ୍ଗନ୍ନଙ୍ଗଂ ଦ୍ରୁତତରମନଙ୍ଗଂ ପ୍ରବଲୟନ୍ ।
ମରୁନ୍ମନ୍ଦଂ ମନ୍ଦଂ ଦଳିତମକରନ୍ଦଂ ତରଳୟନ୍
ରଜୋବୃନ୍ଦଂ ବିନ୍ଦନ୍ କିରତି ମକରନ୍ଦଂ ଦିଶି ଦିଶି ।।

(ସାହିତ୍ୟଦର୍ପଣ – ବିଶ୍ୱନାଥ କବିରାଜ)

ତତୋ ମରୁନ୍ନିନ୍ଦିତବଲ୍ଗୁକେଶରଃ
ପ୍ରସନ୍ନ-ତାରାଧିପ-ମଣ୍ଡଳାଗ୍ରଣୀ
ବିଯୁକ୍ତରାମାତୁରଦୃଷ୍ଟିବୀକ୍ଷିତେ
ଯଥା ବସନ୍ତୋ ହନୁମାନସ୍ତଥାଗତଃ ।।

(ମହାନାଟକ—ହନୁମନ୍ତ କବି)

ଅତି ରସମୟ ବସନ୍ତ ସମୟ ବିଚିତ୍ର ପ୍ରଣୟ ତାହାର
ମିତ୍ର ଅନଙ୍ଗକୁ ପ୍ରବଳ କରଇ ଆଚରି ଚର୍ଚ୍ଚରି ବିହାର ।
ଆଗତେ, ଆରୋହିଲା ନାଗେଶ୍ୱରକୁ
ଋତୁରାଜ ପଦୁଁ ସେ ରଜ ଯେନାକ ବୃନ୍ଦେ ପ୍ରଫୁଲ୍ଲ କେଶରକୁ ।।

(କୋଟୀବ୍ରହ୍ମାଣ୍ଡ ସୁନ୍ଦରୀ—ଉପେନ୍ଦ୍ର ଭଞ୍ଜ)

ଦେଖିଲ ଶିଶିର ଋତୁ ହୋଇଲା ଅନ୍ତ
ପ୍ରବେଶ ହୋଇଲା ଗୃହଭିତର ବସନ୍ତ ।

ଅଗ୍ରସର ହୋଇ ତାର ମାର ହୋଇଲା
ପ୍ରଥମେ ବଳାସୀ ଜନ ମନ ମୋହିଲା ।
ବିକାଶ କୁସୁମ ଶ୍ରେଣୀ କାର୍ମୁକ ଘେନି
ତଥଗତ ମତ୍ତ ଅଳିମାଳ ସିଞ୍ଜିନୀ ।
ନବୋଦ୍ଗତ ସହକାର ଅଙ୍କୁର ଶର
ଯେଣେ ବିରହୀର ବଧ କରେ ବିସ୍ତାର ।

(ଅନଙ୍ଗରେଖା—ଧନଞ୍ଜୟ ଭଞ୍ଜ)

ପରବେଶ ହେଲା ବସନ୍ତ କାଳ
ବରବେଶ ହେଲେ ଭ୍ରୂଙ୍ଗ କୁଳ
ଗରବେ ପ୍ରବଳ ହେଲା ମଦନ
ହରବେ ଜାର ହେଲେ ଯୋଗୀ ଜନ
ପରବେଶ ବୃଦ୍ଧି
ସରବେ ଖେଳିଲେ ବହୁବା କେହି ॥

(ଚନ୍ଦ୍ରକଳା – କବିସୂର୍ଯ୍ୟ)

ବସନ୍ତ ବିଜୟବାରତା ପ୍ରସରିଲା ଭୁବନେ
ପାଦପ ଆମୋଦ ପତର ପରଭୃତ ପଠନେ

+ + +

ପ୍ରୀତି-ପାରବାରେ ଗ୍ରୁଡ଼ିଲେ ପ୍ରାଣପୋତ ଯୋଗିଏ
ମଦନ-ଅନଳ-ତାପରେ ବିଚଳିତ ଯୋଗିଏ ।

(କୀଚକବଧ—ଗଙ୍ଗାଧର ମେହେର)

ସରସମସ୍ତ ବସନ୍ତେ କାଳନେତ୍ରୁ କେମନ୍ତେ
ନ ଦେଖି ନୟନ ପ୍ରାନ୍ତେ ଦୁଃଖ ଦେଇ ରୁ କାନ୍ତେ
ବ୍ରଜବଧୂ ପୁରତାନ୍ତେ ବିଷ୍ଣୁ ଥାନ୍ତେ ପଣନ୍ତେ
ସେପରି ପୁରସବନ୍ତେ କୃଷ୍ଣ ନାହିଁ ରୁ ଶାନ୍ତେ ।

(ଗୋପୀନାଥ ବଲ୍ଲଭନାଟକ—ରଘୁନାଥ ପଟ୍ଟନାୟକ)

ଉଦ୍ଧବ ବେଗି ହେ ବ୍ରଜ ଜାଅ
ସୁରତ ସନ୍ଦେଶ ସୁନାୟ ମେଟୋ ବଲ୍ଲଭନ କୋ ଦାଅ ।

କାମ ପାବକ ଜ୍ୱଲ ମେଁ ତନ ବରହ୍ମ ଶ୍ୱାସି ସମୀର
ଭସମ ନାହିନ ହୋତୁ ପାବତ ଲୋଚନନ କେ ନୀର ॥
(ସୁର ସାଗର – ସୁର ଦାସ)

ଆମ୍ବ ବକୁଳ ବର୍ଣ୍ଣନରେ ବରହିଣୀ –

ଚୂତପାଦପର ନବମୁକୁଳିତ
କୋମଳ କଳିକା ଘଟା
ଜନମାଉଥିଲା କାମୁକକାମୁକ
ମନରେ ଅତି ଉତ୍କଣ୍ଠା ॥
(କାଦମ୍ବରୀ—ବଳଭଦ୍ର ଦେବ)

କ୍ଷମାନିଧି ମୋର ହାରକଣ୍ଠ ହାରକଣ୍ଠ ହାରକଣ୍ଠ ବଚନୀ
ଛଇଳା କୁମୁଦ କୁମୁଦ କୁମୁଦ କୁମୁଦ-ନିନ୍ଦିତ-ହାସିନୀ
କୋକିଳ, କ୍ଷିତିରେ ଗଡ଼ୁଥିବ ଧନ,
କ୍ଷଣେ ଶୁଣି ସୂତକଣ୍ଠ ସୂତକଣ୍ଠ ସୂତକଣ୍ଠ ମୃଦୁ ବଚନ ॥୭॥

**ଅନ୍ୱୟ**—ରେ କୋକିଳ, ମୋ କ୍ଷମାନିଧି ହାରକଣ୍ଠ (ହାର ଯାହା କଣ୍ଠରେ ଥାଏ) ହାରକଣ୍ଠ (ମନୋହର କଣ୍ଠ ଯାହାର) ଓ ହାରକଣ୍ଠ (କୋକିଳ) ବଚନୀ ଅଟେ । ଛଇଳା କୁମୁଦ (କୁ = ପୃଥିବୀ + ମୁଦ = ଆନନ୍ଦ) କୁମୁଦ (କର୍ଣ୍ଣି) କୁମୁଦ (ରଜତ) ଓ କୁମୁଦ (କର୍ପୂର) ନିନ୍ଦିତ ହାସିନୀ ଅଟେ । ସେ କ୍ଷଣେ ସୂତକଣ୍ଠ କୋକିଳ) ସୂତକଣ୍ଠ (ପକ୍ଷୀ) ସୂତକଣ୍ଠ (ଖଞ୍ଜନ) ବଚନ ଶୁଣି ମହୀରେ ଗଡ଼ୁଥିବ ।

**ଅର୍ଥ**—ରେ କୋକିଳ, ମୋ କ୍ଷମାସାଗର ସ୍ୱଧାର କଣ୍ଠରେ ହାର ଥିବାରୁ ତାର କଣ୍ଠ ସୁନ୍ଦର ଦେଖାଯାଏ ଓ ସେ କୋକିଳବଚନୀ ଅଟେ । ପୃଥିବୀକୁ ଆନନ୍ଦଦାୟିନୀ ସେ ଛଇଳାର ହସ ଶୁକ୍ଳତାରେ କର୍ଣ୍ଣି, ରୁପା ଓ କର୍ପୂରର ଶୋଭାକୁ ନିନ୍ଦା କରେ । ସେ ଅରକୁ ଥର କୋକିଳର କୁହୁ ଧ୍ୱନି, ପକ୍ଷିସ୍ୱନ ଓ ଖଞ୍ଜନପକ୍ଷୀର ଧୀରସ୍ୱନ ଶୁଣି ଦୁଃଖରେ ମହୀ ଉପରେ ଗଡ଼ୁଥିବ ।

ପିକ ଧ୍ୱନି ଶ୍ରବଣରେ ବିରହୀ ବିରହିଣୀର ଅବସ୍ଥା—

ସମଦମଧୁକରାଣାଂ କୋକିଲାନାଞ୍ଚ ନାଦୈଃ
କୁସୁମିତ-ସହକାରୈଃ କର୍ଣ୍ଣିକାରୈଶ୍ଚ ରମ୍ୟଃ ।
ଇଷୁଭିରିବ ସୁତୀକ୍ଷ୍ଣୈର୍ମାନସଂ ମାନିନୀନାଂ
ତୁଦତି କୁସୁମମାସେ ମନ୍ମଥୋଦ୍‌ବେଜନାୟ ।
(ଋତୁସଂହାର—କାଳିଦାସ)

ପିକୋଽପି କୋଽପି କୋପିକୋ
ବିଯୋଗିନୀରଭର୍ତ୍ସୟତ୍
ବଚାଂସି ଭଙ୍ଗମାଲପନ୍ତି—
ତାନ ତାନ ତାନ ତାଃ ॥
(ନଳୋଦୟ – କାଳିଦାସ)

ଧୂମାୟିତା ଦଶଦିଶୋ ଦଳିତାରବିନ୍ଦା
ଦେହଂ ଦହନ୍ତି ଦହନା ଇବ ଗନ୍ଧବାହାଃ ।
ତ୍ୱାମନ୍ତରେଣ ମୃଦୁତାମ୍ରଦଳାମ୍ରମଞ୍ଜୁ—
ଗୁଞ୍ଜନ୍ ମଧୁବ୍ରତ ମହୋ କଳ କୋକିଳସ୍ୟ ॥
(ଭାମିନୀବିଳାସ—ପଣ୍ଡିତରାଜ ଜଗନ୍ନାଥ)

ମଧୁରସ୍ତ୍ୱଂ ମଧୁରୈରେବ କୋକିଲା
କଲକଲୈର୍ମଲୟସ୍ୟ ଚ ବାୟୁଭିଃ ।
ବିରହିଣଃ ପ୍ରାଣାନ୍ ହନ୍ତି ଶରୀରଣୋ
ବିପଦି ହନ୍ତ ହନ୍ତ ସୁଧାପି ବିଷାୟତେ ॥
(ଶୃଙ୍ଗାରଶତକ—ଭର୍ତ୍ତୃହରି)

ବୃକ୍ଷା ନୂତନପତ୍ରପୁଷ୍ପକଳିତାଃ କାମସ୍ୟ ଦୂତାଃ ପିକାଃ
କୁର୍ବନ୍ତ୍ୟେଷ ନିନାଦମଭ୍ରମରୀ ପଞ୍ଚେଷୁସନ୍ଦୀପକମ୍ ।
ତଦ୍‌ବଲ୍ଲୀତସୁଗନ୍ଧମନ୍ଦପବନଃ କାନ୍ତେ ବସନ୍ତେ ବନେ
କାଲେଽସ୍ମିନ୍ ରସିକଂ ସମୀକ୍ଷ୍ୟ ମଧୁରଂ ମେ ଦେହି ଦାନଂ ତନୋଃ ॥
(ରସିକାଷ୍ଟକ କାବ୍ୟ—ନାରାୟଣ ଭଟ୍ଟ)

ନବତାଣ୍ଡବତୈଃ ଶିଖାକଳାପୈର୍ଘନମାଚନ୍
ବ୍ୟଥସଙ୍ଗ-ବର୍ଦ୍ଧମାନୈଃ
ଅପତନ୍ନତଦୂରମେବ ବନ୍ଧ୍ୟାଃ ଶିଖିନସ୍ତୁଂ
ଶ୍ରୁତଦୁଃସହୈର୍ନିନାଦୈଃ ।
(ଦଶଗ୍ରୀବବଧମହାକାବ୍ୟ – ମାର୍କଣ୍ଡେୟ ମିଶ୍ର)

ବପିଣ ରସାଳେ ଫଯୋଗୀ ରସାଳେ ପଞ୍ଚମସ୍ୱରକୁ ତନ୍ଧି ଯେ
ବହନ୍ତେ କୋକିଳ ଅଶ୍ରୁରେ ପଙ୍କିଲ ଗଣ୍ଡ କରି ବଇଦେଶି ଯେ
ବୋଲନ୍ତି, ବୋଲାଉ ମନ୍ଦତନୟ
ବିଶେଷରେ ମନ୍ଦ ତନୟ ନ କରି ପରଭୃତ ନାମେ ଜୟ ॥
(ବୈଦେହୀଶ ବିଳାସ—ଉପେନ୍ଦ୍ର ଭଞ୍ଜ)

ଜଗମୋହି ଚନ୍ଦ୍ରା ସୁମେ କେବେ ନ କରଇ
ବନପ୍ରିୟ ସାଳେ ତାକୁଁ କଣ୍ଠି ରୁଜୁଥାଇ ।
(ଦତ୍ତାକ୍ଷର—ଜଗମୋହନ (ଜୀ), (କ୍ରୁ) ସୁମେ, (ର) ସାଳେ
(ପ୍ରେମସୁଧାନିଧି – ଉପେନ୍ଦ୍ର ଭଞ୍ଜ)

ପିକ ପଞ୍ଚମ ସ୍ୱରେ କୁହୁକୁହୁ ଉଚାରେ ସେହି କାଳକୁ ହେଜି ଯେ
ପଞ୍ଚବିଶିଖ ତହୁଁ ଘୋଟିଲା କହୁ କହୁ ତନୁ ପୁଲକ ଭଜି ଯେ
ପଦମାନ, ପ୍ରସରେ ଯେମନ୍ତ ବାସ ଯେ,
ପ୍ରଫୁଲ୍ଲ ଲତା ତରୁ ହସାହସିଣ ଖାଲୁ ପୂରୁଷର ସଦୃଶ ଯେ ॥
(ଛାନ୍ଦଭୂଷଣ—ଉପେନ୍ଦ୍ର ଭଞ୍ଜ)

ରସାଳେ କୋକିଳ ବସି ଦମ୍ଭଶଣୀ ନାଶେ
ରବେ କୁହୁ କୁହୁ କରି ତମନଶା ଘୋଷେ ॥
(ରସପଞ୍ଚକ—ଉପେନ୍ଦ୍ର ଭଞ୍ଜ)

କଳକଳ କଳକଣ୍ଠର ଶୁଣି
କହୁଅଛୁ ଦୁଃଖେ କେଉଁ ମିତଣୀ
କହୁ ଦେବା ଗୋ ବ୍ୟାଧ ବଧ କରୁ
କମଳମୁଖୀ ରାଧା ବାଧା ସରୁ

କଥା ବ୍ୟଥା ତାର
କମଲ ଗୁରୁ ଏ କଥାକୁ ସାର ।।
(ବିଦଗ୍ଧ ଚିନ୍ତାମଣି – ଅଭିମନ୍ୟୁ)

ମଧୁବ୍ରତ ବନଦେବୀ ବନ୍ଦୀଜନ ସୀମନ୍ତିନୀଙ୍କର ଶୃଙ୍ଗାର
ଶିକ୍ଷାମନ୍ତ୍ର ଦୋଲାକେଲିବିଲାସିନୀ ମଙ୍ଗଲପାଠ ପରକାର
ବିରହୀ ପ୍ରାଣପ୍ରସ୍ଥାନକବଚ
ରତିପତି ଧନୁଷ୍ଟଙ୍କାର ସଦୃଶ ପିକନାଦ କରେ ମୋହିତ ।।
(ପ୍ରେମମଞ୍ଜରୀ – ରାଧାମୋହନ ରାଜେନ୍ଦ୍ର ଦେବ)

ଏ ବସନ୍ତକାଳ ମଧୁର ମୃଦୁଲ ମନ୍ଦତନସ୍ୱର ନିଃସ୍ୱନ
ସକଳ ପ୍ରକାର ସୁଖ ପ୍ରଦାୟକ ସୁଗନ୍ଧ ମଳୟ ପବନ
ଯୋଗରୁ—ବିଯୋଗୀଙ୍କୁ କରେ ତାପିତ
ବିପଦ ସମସ୍ତେ ସୁଧାରସ ସୁଦ୍ଧା ହୋଇଯାଏ ତ ବିପର୍ଯ୍ୟତ ।।
(ଭର୍ତ୍ତୃହରି ସୁଭାଷିତ—ରାଧାମୋହନ ରାଜେନ୍ଦ୍ର ଦେବ)

ଏମନ୍ତେ ନାନା ଉପଚାର କରନ୍ତି
ବେଢ଼ିଣ ସକଳ ଆଳି
ପରଭୃତ ବାଣୀ ଅଶନି ମଣିଲା
ଚମକେ ନୃପଦୁଲାଳୀ ।
(ଅନଙ୍ଗରେଖା – ଧନଞ୍ଜୟ ଭଞ୍ଜ)

ଏ ରସ ବସନ୍ତ ସମୟ ହୋଇଚି
ଯେ ପିକ ଡାକରେ ଧୃତି ଖସୁଚି ।
(ଗୋପୀନାଥ ବଲ୍ଲଭ ନାଟକ—ରଘୁନାଥ ପରୀକ୍ଷା)

କି ମନ୍ତ୍ର ଲଭିଛୁ ଅଟବୀ-କବି-ପିକ ସୁକ୍ଷଣେ
ଉନ୍ମାଦଇ କୁହୁ ଝଙ୍କାରେ ମୁହୁର୍ମୁହୁ ଭୁବନେ ।
(କୁହୁମାଣ୍ଡଳ—ମଧୁସୂଦନ ରାଓ)

ଏବେ ସହୁ ସେହୁ ମଳୟାନିଳ
ହୃଦେ ବରଷୁଛୁ ରୂପ-ଅନଳ

ସେହି ମଞ୍ଜୁଳ କୋକିଳ-କାକଳି
କର୍ଣ୍ଣ କୁହର ଜାତ କରେ କି ଭଳି
କି ହେଲି ଏ ଭଣି
ଆହା ଯାପୁଅଛି ଜାଗି ରଜନୀ ।

(ସହୃଦୟାନନ୍ଦ — ବାନାମ୍ବରଆଚାର୍ଯ୍ୟ)

ଯେବେ ପଞ୍ଚଶର୍ ମିତ          କହିବ ଯା ଜାଣେ ସତ
ଅପ୍ରାସଙ୍ଗିକ ହେଲେ ଏ ବାଚ୍ଛଲେ ବାଚ୍ଛ
କହେ ନାମ ମୋ କାମାନ୍ଧ          ହୁଅ ସକଳେ କାମାନ୍ଧ
କାମୁଁ ଜଗତ ଉଦ୍ଭୂତ ନୋହେ ଏ ମିଛ
ପିକର ଏ କାମଦା ବାଣୀ
ଶୁଣି ଧୀର ହେଉଥାନ୍ତି ଯେ ବିରହିଣୀ ।

(ସତ୍ୟଭାମା—ଗୋଲୋକଚନ୍ଦ୍ର ପ୍ରଧାନ)

କୃଷ୍ଣ ଗୀତ ଆଉ          ଗାଆ ନାହିଁ ପିକ
ଉଡ଼ି ଯାଆ ଏଥୁଁ ଦୂରେ
ଗୋପଭୂଷଣ ତ          ରହିଲେଣି ଯାଇ
ସୁଦୂର ମଥୁରା ପୁରେ ।

(କାବ୍ୟ ନାୟିକା—ରାଧାମୋହନ ଗଡ଼ନାୟକ)

କୋଇଲି ରାଣୀ ଲୋ କୋଇଲି ରାଣୀ
ଘଞ୍ଚପତ୍ର କୋଳେ          ସଞ୍ଚରୁ ରୁ ଖେଳେ
ପଞ୍ଚମ ସ୍ୱରେ କି ପୀୟୂଷବାଣୀ ।
ମିଳନ ଛନ୍ଦେ ତୋ ପ୍ରେମ ଭାରତୀ
ବିଶ୍ୱ ବୁକେ ସର୍ଜେ ନବ-ପୀରତି
ସଞ୍ଚରଇ ପ୍ରାଣେ ସୁଖ ସ୍ମୃତି
ବିରହୀର ଗ୍ଲାନି ଦିଏ କରତି
କାହୁଁ ଲୋ ଦଇବ          ତୋ କଣ୍ଠେ ଭରିଛି
କି ନୂଆ ସରଗ — ସୁଧାକୁ ଛାଣି

(ପଲ୍ଲୀପ୍ରୀତି—ଦରଦୀ କବି)

ମାନିନୀ ନାସ୍ତି ଅଭିମାନ ପରେ
ବସନ୍ତ ବଜ୍ର ପକାଏ ସତ୍ୱରେ
ମତ୍ତଅଳି କୋକିଳର ଝଙ୍କାର
ଆଦର ପ୍ରସ୍ଫୁଟିତ କର୍ଣ୍ଣିକାର
କି ଅବା ମନ୍ମଥବାଣ ଗୋ,
ମାନିନୀ ପରାଣେ କାମବୃତ୍ତି ଆଣେ
ଭାଙ୍ଗିବାକୁ ମନ ଟାଣ ଗୋ ॥
(ଋତୁ ସମ୍ଭାର—ଦରଦୀ କବି)

ପର ଦେଶ ବାଲମ ତୁମ ଜାଓଗେ
କହୋ ମେରି କସମ କବ ଆଓଗେ ॥
ଅମବା ପର ଜବ କୋୟଲ ବୋଲେଗୀ
ମେରି ଗ୍ରେଟୀସୀ ଦୁନିଆ ଡୋଲେଗୀ
ଚୁପ ଚୁପ କେ ବରହାନ ରୋଲେଗୀ
ଇସ ଦିଲ କୋ ଠେସ ଲଗାଓଗେ
ଦେଖୋ ପ୍ରୀତ କସ୍ନେ ପଛତାଓଗେ ॥
(ମେଲାଚଲଚ୍ଚିତ୍ର— ଶକୀଲ ବାଦୟୁନୀ)

ଜୀବନ ଜୀବନ ଜୀବନ ଜୀବନ ଧନ୍ୟ ସୁକୁନ୍ତଳା ତେଜିବ
ଜଗତ ନଳିନୀ ନଳିନୀ ନଳିନୀ ନଳିନୀ ଯେବେ ନିରେଖିବ
କୋକିଳ, ଜିବାଧର ମନ-ରଞ୍ଜିନା
ଜଗନ୍ତ ସୁରଭି ସୁରଭି ସୁରଭି ସୁରଭି ସୁରଭି-ବରନା । ୮ ।

ଅନ୍ୱୟ—ରେ କୋକିଳ, ମୋ ସୁକୁନ୍ତଳା ଧନୀ ଜୀବନ (ବାୟୁ) ଜୀବନ (ଜଳ) ଜୀବନ (ସଳଳଦ୍ରୁଣୀ) ନ ନେଇ ତାର ଜୀବନ (ପ୍ରାଣ) ତେଜିବ । ଜଗତର ନଳିନୀ (ପଦ୍ମିନୀ ନାୟିକା) ନଳିନୀ (ପଦ୍ମବନ) ନଳିନୀ (ପଦ୍ମଫୁଲ) ଓ ନଳିନୀ (ନଦୀ)କୁ ଦେଖିବ । ମୋ ଜିବାଧର ମନରଞ୍ଜନା ଜଗତ ସୁରଭି (ପଣ୍ଡିତା) ସୁରଭି (ସୁଗନ୍ଧ) ସୁରଭି (ଚମ୍ପକ) ସୁରଭି (ଚନ୍ଦନ) ଓ ସୁରଭି (ବନମଲ୍ଲୀ) ବରନା ଅଟେ ।

ଅର୍ଥ—ରେ କୋକିଳ, ଧରିର ପଦ୍ମିନୀ ନାୟିକା ରାଧା ପଦ୍ମବନ, ପଦ୍ମଫୁଲ ଓ ନଦୀ (ଏଠାରେ ଯମୁନା)କୁ ଦେଖିଲେ ମାତ୍ରେ ତାର ବିରହ ଦୁଃଖ ବୃଦ୍ଧି ହେବ । ମୋ ପ୍ରକୁନ୍ତଳା ରାଧା ତେଣୁ ବାୟୁ, ଜଳ ଓ ସକଳ ଲକ୍ଷଣୀ ଗ୍ରହଣ ନ କରି ତାର ପ୍ରାଣ ତ୍ୟାଗ କରିବ । ମୋ ମନରଞ୍ଜନା ଜବାଧରି ରାଧା ସୁପଣ୍ଡିତା ଓ ସୁଗନ୍ଧ ଚନ୍ଦନ, ଚମ୍ପକ ଓ ବନମଲ୍ଲୀ ବରନା ଗୌରାଙ୍ଗୀ ଅଟେ ।

ନଳିନୀ ଶବ୍ଦର ଅନ୍ୟତ୍ର ପ୍ରୟୋଗ:—

ଦେଖରେ ନଳିନୀ ନଳିନୀ ନଳିନୀରେ ହୃଳିତ
ଭ୍ରମନ୍ତ ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ ॥

(ଲାବଣ୍ୟବତୀ—ଉପେନ୍ଦ୍ର ଭଞ୍ଜ)

ଏହିପରି ଭ୍ରମର ଶବ୍ଦର ଅନ୍ୟତ୍ର ପ୍ରୟୋଗ:—

ପଦ୍ମକୁମୁଦକୋକନଦଙ୍କର ସୁବାସ ପେନ
ଭ୍ରମରେ ଭ୍ରମରେ ଭ୍ରମନ୍ତ କରି ହରଷ ଧ୍ୱନ ।

ପଦ୍ମାବତୀ ଅଭିଳାଷ – ନୀଳଶଙ୍କରୟୁଗଣୀ)

ସୁରଭି ଶବ୍ଦର ଭିନ୍ନାର୍ଥ: –

ସୁରଭି ମଲ୍ଲିକା ମାଳୁକ ଚମ୍ପକ ବସନ୍ତ ସେ ଜାତିଫଳ
ସୁରଭି ବୋଲଇ ସୁଗନ୍ଧ ସୁବର୍ଣ୍ଣ ଶର ଧନୁ ଗନ୍ଧୋତ୍ପଳ ।

ଗୀତାଭିଧାନ—ଉପେନ୍ଦ୍ରଭଞ୍ଜ)

ରାଧା ପଦ୍ମିନୀ ନାୟିକା: –

କମଳମୁକୁଳମୃଦ୍ୱୀ ଫୁଲ୍ଲରାଜୀବଗନ୍ଧା
ସୁରତପୟସି ଯସ୍ୟାଃ ସୌରଭଂ ଦିବ୍ୟମଙ୍ଗେ ।
ଚକିତମୃଗଦୃଶାଭେ ପ୍ରାନ୍ତରକ୍ତେ ଚ ନେତ୍ରେ
ସ୍ତନଯୁଗଲମନର୍ଘଂ ଶ୍ରୀଫଳଶ୍ରୀବିଡ଼ମ୍ବୀ ॥

(ଦ୍ୱାତ୍ରିଂଶତ୍ ପୁତ୍ତଳିକା – କାଳିଦାସ)

ପମ୍ପର୍ଣ୍ଣ ଚନ୍ଦ୍ରବଦନା କନକବରନା
ଶ୍ୟାମା ଶିରୀଷକୋମଳଗାତ୍ରୀ ପିକସ୍ୱନା

ବଡ ବଳ୍ଗିତସୁଟକେଶୀ ରାଜହଂସଗତି
କମ୍ବୁକଣ୍ଠୀ ଆକର୍ଣ୍ଣନୟନା ସ୍ଥିରମତି ॥
(ପଞ୍ଚଶାୟକ—ଉପେନ୍ଦ୍ର ଭଞ୍ଜ)

ବିରହିଣୀର ଭୋଜନ ତ୍ୟାଗ: –

ବିଷୋଚନ ହେଲା ସୁଧା ଆହାର
ବିଷୋଚନ କଣ କର୍ପୂର ଚୂର
ବିରେଚନ ଉଦେ ହେବାର ଚହିଁ
ବିରେଚନ କରଂନ ଗୁଡ଼େ ସହି
ବୟସୀଙ୍କ ସାର
ବୟସି ! ମେରୁ ହେଲା ଆମ୍ର ପୂର ॥
(ବୈଦେହୀଶବିଳାସ—ଉପେନ୍ଦ୍ରଭଞ୍ଜ)

ଗୁଡ଼ିଲାକ ସୁଧା ଅଶନ, ବସନ ଆଡ଼ିଲାକ ଦେହ ଦୁଃଖକୁ
ଏଡ଼ିଲାକ ବେଶଭୂଷା ଚତୁରା ମୋଡ଼ିଲାକ ମୁଖ ସୁଖକୁ
ବାଳା ଯେ, ଛୁଡ଼ିଲାକ କଥା ବେଳରେ,
ଉଡ଼ିଲାକ ତୃଣପରାୟ ମନ ତା ବୁଡ଼ିଲାକ ଖେଦଜଳରେ ॥
(ବ୍ରଜବିହାର – କୃପାସିନ୍ଧୁ ଦାସ)

ପଦ୍ମଫୁଲ ଦର୍ଶନରେ ରାଧାର ଦୁଃଖ:—

କାଳିଆ କମଳ ଦେଖିଲେ କମଳ ନୟନରେ ହୁଏ ଜରଜର
ଦେଖି ନବଘନ ତାର ଅପଘନ ପୁଲକ ହୁଅଇ ଥରଥର
ଘନ ସୁନ୍ଦର ହେ,
ଯମୁନା ଯିବାକୁ ଡର ଡର
ଏ ଅଙ୍ଗ ବିଚିତ୍ର କଜ୍ଜଳରେ ଚିତ୍ର ଲେଖି ଚୁମ୍ବିଦିଏ ବାର ବାର ॥
(ବିଦଗ୍ଧଚିନ୍ତାମଣି – ଅଭିମନ୍ୟୁ)

ଯାମ ଯିବ କଳକଣ୍ଠ କଳକଣ୍ଠ କଳକଣ୍ଠ ସୁବାଣୀ ଶୁଣି
ଯିବ ଚିବୁକ ଧରିଥିବ ବୈକୁଣ୍ଠ ବୈକୁଣ୍ଠ ମାନସ ହାରିଣୀ
କୋକିଲ, ଯାଲେ ଡନ୍ତ ଥିବ ଶରୀର
ଯିଡ଼ିଥିବ ତାର ଅଧର ଅଧର ଅରୁଣ ଅରୁଣ ନିକର । ୯ ।

ଅନ୍ୱୟ – ରେ କୋକିଳ, ସେ କଳକଣ୍ଠ (କୋକିଳ) କଳକଣ୍ଠ (ମୟୂର) ଓ କଳକଣ୍ଠ (ପାରା)ର ସୁବାଣୀ ଶୁଣି ଝାମ ହିବ । ସେ ବୈକୁଣ୍ଠ (କୃଷ୍ଣ) ମାନସହାରିଣୀର ଝଳ (ଉଜ୍ଜ୍ୱଳ) ଚିବୁକ (ଓଠ) ବୈକୁଣ୍ଠ (ବିଗତ କୁଣ୍ଠାଭାବ) ଥିବ । ଝାଳରେ ତାର ଶରୀର ତନ୍ତ୍ର ଯାଇଥିବ । ତାର ଅଧର (ଓଠ) ଅଧ (ତଳ)ର ଅରୁଣ (ବାଳସୂର୍ଯ୍ୟ) ଓ ଅରୁଣ (ସିନ୍ଦୁର ପରି ଲାଲ-ରଙ୍ଗ) ଲିଭିଥିବ ।

ଅର୍ଥ – ରେ କୋକିଳ, ମୋ ପ୍ରିୟା କୋକିଳ, ମୟୂର ଓ ପାରାର ସ୍ୱନ ଶୁଣି ମୋହ ଯାଉଥିବ । ସେ କୃଷ୍ଣମନହାରିଣୀର ଉଜ୍ଜ୍ୱଳ ଓଠ ନିଃସ୍ପୃହ ହୋଇଥିବ । ଝାଳରେ ତାର ଦେହ ଓଦା ହୋଇଥିବ । ବାଳସୂର୍ଯ୍ୟ ଓ ସିନ୍ଦୂର ସମ ରକ୍ତିମା ଆଜି ତାର ଓଠ ତଳରୁ ଲୋପ ପାଇଥିବ ।

କୋକିଳଧ୍ୱନି ଶ୍ରବଣରେ ବିରହୀ ବିରହିଣୀର ଅବସ୍ଥା—

କୋକିଳାକୁଳ ସୀମାନ୍ତେ ଦୟିତାସ୍ୟା ମମାନଘ
ମନ୍ମଥାୟାସସମ୍ଭୂତୋ ବସନ୍ତଗୁଣ ବର୍ଦ୍ଧିତଃ ।
ଅୟଂ ମାଂ ଧକ୍ଷତି କ୍ଷିପ୍ରଂ ଶୋକାଗ୍ନିର୍ନଚିରାଦିବ
ଅପଶ୍ୟତସ୍ତାଂ ଦୟିତାଂ ପଶ୍ୟତୋ ରୁଚିରଦ୍ରୁମାନ୍ ।

(ବାଲ୍ମୀକୀ ରାମାୟଣ)

ଚୂତାଙ୍କୁରାସ୍ୱାଦକଷାୟକଣ୍ଠଃ ପୁଂସ୍କୋକିଲୋଯନ୍ମଧୁରଂ ଚୁକୂଜ ।
ମନସ୍ୱିନୀମାନବିଘାତଦକ୍ଷଂ ତଦେବ ଜାତଂ ବଚନଂ ସ୍ମରସ୍ୟ ।

(କୁମାର ସମ୍ଭବ—କାଳିଦାସ)

ବସନ୍ତ ଋତୁ ବଣୁଁ ମଣ୍ଡଳରେ
ବସନ୍ତ ରସାଳ ତରୁ ଉପରେ
ବସନ୍ତ ଦୂତ କୂଜ ଉଚ୍ଚସ୍ୱରେ
ବସନ୍ତବସନା ଅଗସ୍ତ୍ୟ ସ୍ୱରେ
ବ୍ୟାଧି ଘାତକର
ବାତଘାତ ଗୁଞ୍ଜୁଁ ଉଡ଼ୁ ଭ୍ରମର ।

(ବୈଦେହୀଶ ବିଳାସ – ଉପେନ୍ଦ୍ରଭଞ୍ଜ)

ସନ୍ତାପିକ ମନ୍ତ୍ରୁ କଳରବେ କହଇ
ଆପଦରେ ସ୍ୱରଭଙ୍ଗ ପୂଳକ ବହ୍ନି ।
(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ — ଉପେନ୍ଦ୍ର ଭଞ୍ଜ)

ବସନ୍ତରେ ବିରହୀ ଅବଶ
ବସନ୍ତ ଦୂତୀ ଖଗରେ ବଶ
ବସଇ ଉଠଇ ପିକକୁ କହଇ
ଯୁଗ ସମ ରଜନୀ ଦିବସ ।
(ପ୍ରେମସୁଧାନିଧି — ଉପେନ୍ଦ୍ରଭଞ୍ଜ)

ଋତୁ ବସନ୍ତ ହସି ହସି ଆସିଲା
ଦିଗ ଦିଗନ୍ତ କୁସୁମ ବିକଶିଲା
ଅତି ଦୁରନ୍ତ କୋଇଲି ଡାକ ଦେଲା
ପ୍ରିୟ ରହିଲା କାହିଁ ?
(କବିଚନ୍ଦ୍ର କାଳୀଚରଣ ଗୀତାବଳୀ)

ସ୍ୱଭାବତଃ ଶୁକ ପିକ ପାଖି ସ୍ୱର
ଶ୍ରବଣ ତୋଷଣ ପଟୁ
କିନ୍ତୁ ପ୍ରିୟ ବିନା ସେହି ସ୍ୱନ ଏବେ
ହେଉଅଛି କର୍ଣ୍ଣ କଟୁ ।
(ପ୍ରଣୟବଲ୍ଲରୀ — ଗଙ୍ଗାଧର ମେହେର)

ବସନ୍ତ ଏସେଛେ ଅଜି କଣ୍ଠେ ଲୟେ ତାର
କୋକିଲେର ଆକୁଲ ଝଙ୍କାର ।
ଥିକେ ଥିକେ ଓଇ ଶୁନୋ ଶୁଣି
ନବଜେ ଉଠେ ଆଜ କତ ଆକାଂଖାର ବାଣୀ ।
(ଓମାର ଖାୟାମ କବିତା — ନରେନ୍ଦ୍ରଦେବ)

ମୟୂର ଓ ଅନ୍ୟ ପକ୍ଷି ସ୍ୱନ ଶ୍ରବଣରେ ବିରହିଣୀ—
ମହାସମରସୂଚକଃ ପ୍ରତିଦଶଂ ମନୋଜନ୍ମନୋ
ମୟୂରଗଳକାହଳୀକଳକଳଃ ସମୁଜ୍ଜୃମ୍ଭତେ ।

ପୟୋଦମଲନେ ଢନେ ପରୁଷତ୍ୱପ୍ରୟୋଗ ଦୀଥାଂ
ନରେଷ୍ଟୁ ବନଭାସ୍ୟୁ ବା ଦଧତ ହନ୍ତ କେକା ଇତ ॥
(ଚମ୍ପୂରାମାୟଣ—ଭୋଜରାଜ)

ମନ୍ଦଂ ମରୁଦ୍ ବହତ ଗର୍ଜତ ବାରିବାହୋ
ବିଦ୍ୟୁଲ୍ଲତା ଚଳତ ନୃତ୍ୟତ ନୀଳକଣ୍ଠଃ ।
ଏତାବତ ବ୍ୟତକରେ ତରୁଣସ୍ୟ ତସ୍ୟ
ମୂର୍ଚ୍ଛେଦ କେବଲମଭୂଦବଲମ୍ବନାୟ ॥
(ସୁଭାଷିତରତ୍ନଭାଣ୍ଡାଗାର)

ଶିଖିନୀ କୂଜତ ଗର୍ଜତ ତୋୟଦେ
ସ୍ଫୁଟତ ଜାତଲତାକୁସୁମାକରେ
ଅହହ ପାନ୍ଥ ! ନ ଜୀବତ ତେ ପ୍ରିୟା
ନଭସି ମାସି ନ ଯାସି ଗୃହଂ ଯଦ ॥
(ସୁଭାଷିତରତ୍ନଭାଣ୍ଡାଗାର)

ଦାତ୍ୟୁହଲାବକମୟୂର କପୋତହଂସ—
ପାରାବତାଦରୁତବନ୍ଧୁଜନଂ ରତାନ୍ତେ
ତନ୍ନିଶ୍ରନୈଃଶ୍ୱସିତସୀତ୍କୃତହାନନାଦୈଃ
ସଂଯୋଜୟେନ୍ମଦନତନ୍ତ୍ରନମୈଥୁନାଦୌ ॥
(ରସିକ ସର୍ବସ୍ୱ)

ସରଲ ସରଲ ହୃଦୟା ଦେଖରେ ସୁରଭି ସୁରଭି ଶୋଭନ
ଦେଖରେ ମୟୂର ମୟୂରକ ମୂଳେ କୁରୁବକ ବନେ ରଞ୍ଜନ
ଆଗୋ ସଜନ ! ସଜ ନତ୍ୟ ହୁଏ ଏଥେ କାମ
କୁମାର କୁମାର ଶୋଭା ଦେଖ ଏବେ ସୁନାସୀ ସୁନାସୀ ସମ ॥
(ଅଘୁନାଥ ବିଳାପ—ଧନଞ୍ଜୟଭଞ୍ଜ)

କେକୀର ସଙ୍ଗୀତରେ କାମୁକ ଉଲ୍ଲାସ
ଧରମଣି ଆହ୍ଲାଦନେ ଘନ ବିଳାପ ॥
(କୋଟିବ୍ରହ୍ମାଣ୍ଡସୁନ୍ଦରୀ — ଉପେନ୍ଦ୍ର ଭଞ୍ଜ)

କଲୁ କଳୁ କେକୋ କାକ କାକା କଲୁ ଝକ
କକେ କକ କେକା କେକୋ କକ କାଙ୍କ କକ ।।
(ପ୍ରେମସୁଧାନିଧି—ଉପେନ୍ଦ୍ର ଭଞ୍ଜ)

[ଅର୍ଥ – କଲୁ = ବର୍ଷାକାଳକୁ, କଳୁ = ଡାହୁକ ଶବ୍ଦକୁ, କେକୋ = ଚକ୍ରବାକ ଶବ୍ଦକୁ, କାକ = କୁଆ, କାକା = କୁଆର ଶବ୍ଦକୁ, କଲୁ = ବର୍ଷାପାଣିକୁ, ଝକ = କୁଆପଥରକୁ, କକେ = ମୟୂର ଧ୍ୱନିକୁ, କକ = ଝିଙ୍କାରିସ୍ୱନକୁ, କେକା = ମେଘ ଘଡ଼ଘଡ଼ ଶବ୍ଦକୁ, କେକୋ = ଭେକ ଶବ୍ଦକୁ, କକ = କଙ୍କିଣିଆଳର, କାଙ୍କ = ଚକ୍ରାରକୁ ଶୁଣି, କକ = କାମ ତାପ ବୃଦ୍ଧି ହୁଏ ।]

ଶିଖରୀ ଉପରେ ଶିଖୀର ଯେ ନାଦ
ଶୁଭୁଥିବ ଘନଘନ
ତା ଶୁଣନ୍ତେ କର୍ଣ୍ଣେ ମୋହ ଯାଉଥିବ
ସଖି ମୋ ଜୀବଜୀବନ ।।
(ସଙ୍ଗୀତ ଉପେନ୍ଦ୍ର ଭଞ୍ଜ)

ନବଶିଖରେ ଆନନ୍ଦେ ଡାକନ୍ତି ନୀଳକଣ୍ଠେ
ପୁଚ୍ଛ ଟେକାଇ ନାଚୁଁ ହଠେ
ନବବାଳୀ ସେ ରବ ଶୁଣି ଚମକି ପଡ଼
ଜୀବନ ରଖିଥିବ କଷ୍ଟେ
ରେ ବଳାହକ !
ନହିଁ କି ଅଟେ ମୋର ହିଆ
ନ ଫାଟି ରହିଅଛୁ ଯାହା
ନ ସହୁଥିଲି ଲେଶେ ମୋ ବିଚ୍ଛେଦ ଏବେ ସେ
କଷ୍ଟେ ହେବନି ଅନ୍ତର୍ଦାହା ।।
(ବଳାହକ ଚଉତିଶା—ବ୍ରଜରାଜ ସିଂହଦେବ)

ଏ ନୀର ଶିକର ସ୍ୱଭାବେ ଶୀତ
ତଥାପି ମୋ ଅଙ୍ଗ କରେ ତପତ
କେକାଏ ନାଚନ୍ତି ମେଘକୁ ଦେଖି
କେ କାଏ କେ କାଏ ବୋଲି ଡାକନ୍ତି

ଚଳାନ୍ତୁ ଅଛନ୍ତି
ଏ ଶ୍ଳେଷ ସମ୍ଭାଳିବ କି ଏ ଗ୍ରନ୍ଥ ॥
(ଭଟ୍ଟୀକାବ୍ୟ—ଗୋପୀନାଥ ସିଂହଦେବ)

ଶ୍ରାବଣ ଆସିଲା ଯେଣ ବରଷାର ଥାଟ
କେକମ ପାଇଁକି କେକା ବରଚିଲ ନାଟ
ତୋତେ ନ ଭୁଲିଲି ବୋଲି
ଗଣିଲି ବସି ମୁଁ ଶୋକ-ବାଗନଧି-ବାଲି ॥
(କବିତାକୁମୁଦ – ବିଚ୍ଛନ୍ଦଚରଣ ପଟ୍ଟନାୟକ)

କୋକିଳର କଣ୍ଠ ବଂଶୀର ସ୍ୱନ
ଭଅଁର ଗୁଞ୍ଜନ ତେଣ୍ଟାଇ ଡାକ
ମୟୂରର କେକା ଡାହୁକ ଡ଼ିଣ୍ଡିମ
ମେଘ ଗରଜନ ବେଙ୍ଗ ଟମକ ।
ଏ ସୁଢ଼କ ସବୁ ଶୁଣିବାର ପାଇଁ
ଶୁଣିଲେ ମନରେ ଲଗଇ ନଥାଁ
ପ୍ରକୃତିଟା ପୁଣି ବେଳ କାଳ ଜାଣି
ତେଙ୍ଗିଦିଏ ଏଇମାନଙ୍କ ତଥାଁ ॥
(ଶ୍ରୀକୃଷ୍ଣ – ଜୟକୃଷ୍ଣ ପଟ୍ଟନାୟକ)

ବିରହରେ ଗଣ୍ଡର ପାଣ୍ଡୁରତା:—
ତନ୍ୱୀ ମେଘଜଳାର୍ଦ୍ରପଲ୍ଲବତୟା ଧୌତାଧରେବାଶ୍ରୁଭିଃ
ଶୂନ୍ୟେବାଭରଣୈଃ ସ୍ୱକାଳବିରହାଦ୍‌ବିଶ୍ରାନ୍ତପୁଷ୍ପୋଦ୍‌ଗମା
ଚିନ୍ତାମୌନମିବାସ୍ଥିତା ମଧୁଲିହାଂ ଶବ୍ଦୈର୍ବିନା ଲକ୍ଷ୍ୟତେ
ଚଣ୍ଡୀ ମାମବଧୂୟ ପାଦପତିତଂ ଯାତା ପ୍ରକୁପେୟବ ସା ॥
(ବିକ୍ରମୋର୍ବଶୀୟ – କାଳିଦାସ)

ଗଳଦ୍‌ବାଷ୍ପସ୍ରୋତପ୍ଲୁତଧବଳଗଣ୍ଡା ମୃଗଦୃଶୋ
ବଦୃସ୍ତନ୍ତେ ଯତ୍ର ପ୍ରବଳମଦନା ଦେଶବଦଶାଃ ॥
(ହଂସଦୂତ – ରୂପଗୋସ୍ୱାମୀ)

ପାଣ୍ଡୁର ବଦନ ଗଣ୍ଡ ଗଳନ୍ତ ବାଷ୍ପଧାରର ଯୋଗେ
ଚଣ୍ଡ ମଦନ ଦଣ୍ଡ ହରଣନେଶା ସତତ ବେଗେ ॥
(ହଂସଦୂତ – ଦରଶୀନବ)

ନିଷ୍ଟସ୍ୟେ ସଜନୀ ପଲାସ ପଲାସ ପଲାସ ପଲାସ କରିବ
ନିରଞ୍ଜନା ରଞ୍ଜନା ରଞ୍ଜନା ଘଷ ବରଷ ସମାନ ଗଣିବ
କୋକିଳ, ନୀରଦକାଳେ କ କରିବ
ନିରନ୍ତେ କଣ୍ଟକ କଣ୍ଟକ କଣ୍ଟକ-ନେଷାର ଜାତ ହୋଇଥିବ ॥୧୦॥

ଅନ୍ୱୟ – ରେ କୋକିଳ, ମୋ ସଜନୀ ନିଶ୍ଚୟ ପଲାଶ (ପତ୍ର) ପଲାଶ (ଫୁଲକଢ଼) ପଲାଶ (ପଲ୍ + ଅ + ଅଶ୍ + ଧାତୁ = ଗମନ କରିବା ଅର୍ଥାତ୍ ବ୍ୟାପିବା) ପଲାଶ (ନିଦ୍ଦ୍ୟ) ହେବ । ସେ ନିରଞ୍ଜନା (ପବିତ୍ରା) ରଞ୍ଜନା (ରଞ୍ଜନକାରିଣୀ) ଓ ରଞ୍ଜନା (ଯୁନା) ଘଷକୁ ବର୍ଷ ପରି ମନେ କରିବ । ସେ ନୀରଦ (ମେଘ) କାଳରେ କ'ଣ କରିବ । ନୀରନ୍ତେ (ସବୁବେଳେ) କଣ୍ଟକ (ମୀନ) ନେତ୍ରାର କଣ୍ଟକ (ମୁନ) କଣ୍ଟକ (ରୋମହର୍ଷଣ) ହେଉଥିବ ।

ଅର୍ଥ—ରେ କୋକିଳ, ମୋ ସଜନୀ ରାଧା ପତ୍ରଫଳଗ୍ନ ଫୁଲକଢ଼ମାନ ଫୁଟିବାର ଦେଖିଲେ (ପ୍ରେମର ସୂଚନା) ମୋର ବିରହ ଯୋଗୁଁ ଅଭିମାନ କରି ଶେଷରେ ମୋ ପ୍ରତି ନିର୍ଦ୍ଦୟ ହେବ । ସେ ପୂତମନା, ସୁନ୍ଦରାଙ୍ଗୀ ଓ ମନରଞ୍ଜନକାରିଣୀ ମୋ ବିରହରେ ଗୋଟିଏ ଘଡ଼ିକୁ ବର୍ଷ ସମାନ ମନେ କରିବ । ସେ ବର୍ତ୍ତମାନ ଏ ମେଘସମୟରେ କ'ଣ କରିବ । ସବୁବେଳେ ଯେ ମୀନନୟନାର ରୋମହର୍ଷଣ ହୋଇ ତାର ଦେହରେ (କନ୍ଦର୍ପର) ମୁନ ଫୁଟିଲା ପରି ଦେଖାଯାଉଥିବ ।

ବିରହରେ ଘଟିତ ଦୀର୍ଘତା: –

ଚନ୍ଦ୍ରଖଣ୍ଡନବଷ୍ଟତେ ମୃଦୁଗନ୍ଧ ବାତୋଽପି ବଜ୍ରାୟତେ
ମାଲ୍ୟଂ ସୂଚକୁଳାୟତେ ମଲୟଜାଲେପଃ ସ୍ଫୁଲିଙ୍ଗାୟତେ ।

ଯଦି କଳ୍ପଶତାୟତେ ବିଧିବଶାତ୍ ପ୍ରାଣୋଽପି ସଂଶୟ୍ୟତେ
ହା ହନ୍ତ ପ୍ରମଦାବିୟୋଗସମୟଃ ସଂହାରକଳ୍ପାୟତେ ।
(ସୁଭାଷିତରତ୍ନଭାଣ୍ଡାଗାର)

ଯତ୍ରି କାଳମୃଗୋପମା ମଳୟଜୋ ଗନ୍ଧାନଳଃ କିଂ ବହୁଂ
ସୋମଃ ସୂର୍ଯ୍ୟ ଇବାଭବନ୍ମୁଳସ୍ୟକାଲେପଃ ସ୍ଫୁଲିଙ୍ଗୋପମଃ ।
ଉକ୍ତାଃ ପୁଷ୍କରବାଦ୍ୟଗୀତପରଭୃତ୍ ପାରାବତାଦିଧ୍ୱନିଃ
ବଜ୍ରସ୍ୟାହତରେବ କର୍ଣ୍ଣଯୁଗଳେ ବିଚ୍ଛେଦତୋ ମେ ତବ ॥
(ଚୌର ପଞ୍ଚାଶିକା – ବିଲ୍ହଣ)

ତୋହର ବିନୁ ବାଳା    ରଜନୀ ଯୁଗ ପରି
ଅନଳ ପ୍ରକାର ଚନ୍ଦନ
ମଳୟ ସମୀରଣ    ବିଷ ପରାୟେ ଜାଣ
କରୁଛୁ ଅଧିକ ଦହନ
ପ୍ରାଣଧନ !
କୋକିଳ ଗୀତବାଦ୍ୟ ସ୍ୱନ
ହୋଏ ବିଚ୍ଛେଦୁଁ ତୋର    କର୍ଣ୍ଣଯୁଗଳେ ମୋର
ଅଶନିପତନ ସମାନ ॥
(ଇଚ୍ଛାବତୀ – ଧନଞ୍ଜୟ ଭଞ୍ଜ)

କାନ୍ତ ବିନା ଏବା ରଜନୀ ସଜନି !
କୋଟି ଯୁଗ ସମ ହେଲଟି ରେ ॥
(ସଙ୍ଗୀତ ଉପେନ୍ଦ୍ର ଭଞ୍ଜ)

ବର୍ଷାକାଳରେ ବିରହୀ – ବିରହିଣୀଙ୍କର ଚିନ୍ତା:—
ମେଘାଲୋକେ ଭବତି ସୁଖିନୋଽପ୍ୟନ୍ୟଥାବୃତ୍ତି ଚେତଃ
କଣ୍ଠାଶ୍ଳେଷପ୍ରଣୟିନିଜନେ କିଂ ପୁନର୍ଦୂରସଂସ୍ଥେ ॥
(ମେଘଦୂତ – କାଳିଦାସ)

କ୍ଷିପ୍ରଂ ପ୍ରସାଦୟତ ସମ୍ପ୍ରତି କୋଽପି ତାନ୍
କାନ୍ତାମୁଖାନ ରତବିଗ୍ରହକୋପିତାନ୍

ଉତ୍କଣ୍ଠୟନ୍ତି ପଥିକାନ୍ ଜଲଦାଃ ସ୍ୱନନ୍ତଃ
ଶୋକଃ ସମୁଦ୍ଭବତି ତଦ୍‌ବନିତାସ୍ୱନନ୍ତଃ ॥
(ଯମକକାବ୍ୟ—ଘଟକର୍ପର)

ଦୈବାଦହମଦ୍ୟ ତୟା ଚପଲାୟତନେତ୍ରୟା ବିୟୁକ୍ତଶ୍ଚ
ଅବିରଳବିଲୋଲଜଲଦକାଲଃ ସମୁପାଗତଶ୍ଚାୟମ୍ ॥
(କାବ୍ୟପ୍ରକାଶ—ମମ୍ମଟ ଭଟ୍ଟ)

ଅୟଂ କାଲଃ କାଲପ୍ରମଥନଗଲାଭୈରଭିନବୈ—
ରହ୍ୱଂ ଯୂନାଯୂନାମପହରତି ଧୈର୍ଯ୍ୟଂ ଜଲଧରୈଃ ।
ସ୍ଫୁରଦ୍ଧାରା ଧାରାପରିଚିତଜଡ଼ା ବାନ୍ତି ସହସା
ନଭସ୍ୱନ୍ତଃ ସ୍ୱନ୍ତଃ କଥମିବ ବିୟୋଗଃ ପରିଣମେତ୍ ॥
(ଚମ୍ପୂରାମାୟଣ—ଭୋଜରାଜ)

ଗର୍ଜନ୍ତି ଶୈଳଶିଖରେଷୁ ବିଲମ୍ବିଲମ୍ବା
ମେଘା ବିୟୁକ୍ତବନିତାହୃଦୟାନୁକାରାଃ ।
ଯେଷାଂ ରବେଣ ସହସୋତ୍ପତିତୈର୍ମୟୂରୈଃ
ଖଂ ବୀକ୍ଷ୍ୟତେ ମଣିମୟୈରିବ ତାଲବୃନ୍ତୈଃ ॥
(ମୃଚ୍ଛକଟିକ — ଶୂଦ୍ରକ)

ନିରବାପୟଦମ୍ବୁଦଃ ସମନ୍ତାତ୍
ପରିତାପଂ ଜଗତୋ ନିଦାଘଜାତମ୍ ।
ବିଷମୋ ବିରହାନଲପ୍ରତାପୋ
ନବ ଏବାସ୍ୟ ବନେ ବନେ ବଧୂଃ ॥
(ଦଶଗ୍ରୀବବଧମହାକାବ୍ୟ — ମାର୍କଣ୍ଡେୟ ମିଶ୍ର)

ହା ହା ମୋର ପ୍ରିୟସଖି ହେ ବାଲା
ତୁ ମୋ ଅମୂଲ୍ୟକଣ୍ଠରତ୍ନମାଳା
ନୟନେ ଦେଖିବୁ ଏ ଘନ ଲୀଳା
କେସନେ ସହିବୁଟି କାମ ଜ୍ୱାଳା
ସହଜେ ଅବଳା,
ଶିରୀଷ ସଦୃଶ ତନୁ କୋମଳା ॥
(ଅନଙ୍ଗରେଖା — ଧନଞ୍ଜୟ ଭଞ୍ଜ)

ଶେଷେ ସମ୍ପୂର୍ଣ୍ଣ ସଖି ଆଷାଢ଼ର ଅନ୍ତେ
ଶ୍ରାବଣ ପ୍ରବେଶ ଗୋ ଜଳଦଗ୍ରୁ ହୋନ୍ତେ
ବିଜୁଳି ଝଲକେ ଗୋ ଚମକ ଉଠେ ହିଆ
କେସନ ବନ୍ଧୁବ ମୋର ପାଶେ ନାହିଁ ବାନ୍ଧା ।।

ରହସ୍ୟ ମଞ୍ଜରୀ—ଦେବଦୁର୍ଲ୍ଲଭ ଦାସ)

ଦେଖି ନବକାଳିକା ବକାଳିକା ମାଳିକା
ଅଳି କାଳିକା କାନ୍ତ ସ୍ମୃଣ ।।

(ଲାବଣ୍ୟବତୀ—ଉପେନ୍ଦ୍ରଭଞ୍ଜ)

ଶ୍ରବଣେ ଘନଘନ          ଗର୍ଜନ ଘନଘନ
ବୃହିଁ ଲୋତକ ଥନ ଥନ
କନ୍ଦେ ସୁମନ ମନ—          ମୋହିତ ଜୀବନ ବନ-
ଜାଣି ହେବନ ଛନଛନ
ହେ ଜଳଧର !
କେଉଁ ନେବ ଦୁର୍ଦ୍ଦିନ ଦିନ
ସେ ଯେ ମୋର ନିଧନ ଧନ
ହୋଇବ ଅନ ଅନ –          ଭବୁ ଭବନ ବନ
ସେ କି କଷ୍ଟ ସ୍ୱଜନ ଜନ ।।

(ରସିକ ହାରାବଳୀ—ଉପେନ୍ଦ୍ରଭଞ୍ଜ)

କେମନ୍ତେ, ବନ୍ଧୁବ ଜୀବନ ଧନ
ସେ ଦେଶେ ଉଦେ ହେଲେ ନବଘନ
ଗର୍ଜ୍ଜନ ଶୁଣି ଚମକିବ ଗ୍ରୀଢ଼
କାଳ ହେବ ତାକୁ ଅନ୍ଧାର ରାଢ଼
ସେ ନବୀନ ବାଳୀ
ନୁହଇ କାମ ପଲ୍ଲବ ଭଳି ।।

(ସୁବର୍ଣ୍ଣରେଖା—ଉପେନ୍ଦ୍ରଭଞ୍ଜ)

ନୀରଦ ଗଗନେ ଘୋଟି          କରୁଥିଲା ଦନେ ବୃଷ୍ଟି
ଝଟ ଝଟ ମାରୁଥିଲା ଶକୁ

ନୀଳବର୍ଣ୍ଣ ଭେକ କୁଳ          ଛନ୍ଦେ କରୁଥିଲେ ଖେଳ
ଡାହୁକ ବଚନ ଅତି ମନ୍ଦ୍ର
ନଳନାକ୍ଷି !
ଜଣା ହୋଇଥିଲା ଅର୍ଦ୍ଧ ଚନ୍ଦ୍ର
ନୀପ ଗନ୍ଧେ ଗନ୍ଧବାହ ବନ୍ଧ ॥
(ଚଉପଦୀଭୂଷଣ—ଉପେନ୍ଦ୍ରଭଞ୍ଜ)

ଏ ଘୋର ବରଷା କାଳେ ପ୍ରିୟତମା
ରସ ଆଦରରେ ବସିଥିବ
ବନପଥ-ପଥ-ପଥ ପରେ ଦୃଷ୍ଟି
ଦେଇଣ ସନ୍ତାପ କରୁଥିବ ॥
(ସଙ୍ଗୀତ—ଉପେନ୍ଦ୍ରଭଞ୍ଜ)

ଆସି ଘନ କାଳ ହୋଇଲା ରେ
ଘନ କେଶୀ ସଙ୍ଗ ନୋହିଲା ରେ ।
ଚଉଷଠୀ ବନ୍ଧ ଜାଣେ ରମଣୀ
ଚତୁର୍ମାସ୍ୟା ଦେଖି ସତ୍ର ଯିବଣୀ
ଆଲୀ ହୃଦୟରେ ଆତଙ୍କବତୀ
ମାର ଶରେ ତନୁ ଦହିଲା ରେ ॥
(ସଙ୍ଗୀତ - ଉପେନ୍ଦ୍ରଭଞ୍ଜ)

ଆଷାଢ଼ ହୋଇ ଘନ, ବରଷୁ ଅଛୁ ବନ
ଅତି ପ୍ରବଳ ହୋଇ, ବହେ ଝଞ୍ଜା ପବନ
କାଳକଣ୍ଠକ ମାନ, ରଟନ୍ତି ସତ୍ର ଧନ
କେମନ୍ତେ ପ୍ରାଣବନ୍ଧୁ ମୋର ବଞ୍ଚିବ ଧନ ॥
(ସଙ୍ଗୀତ - ଉପେନ୍ଦ୍ରଭଞ୍ଜ)

କରକା ପ୍ରକର ମଧ୍ୟରେ ପଡ଼ି
କୁଳଣ ଘାତେ ଗିରିଶୃଙ୍ଗ ଝଡ଼ି
ବିୟୋଗୀ ଆଶା ଆଧାର ପାତରେ
ବିନାଶ ଜଳ କେବଳ ସତ୍ତ୍ୱରେ

ବଳାକ ବହ୍ୱାର
ହେଡ଼େ କି ଜମ୍ବୁଶମ୍ବଳ ତାହାର ॥
(ଶଶିରେଖା—ପଦ୍ମନାଭ ଶ୍ରୀଚନ୍ଦନ)

ବରଷାକାଳ ହୋଇଲା ଆସି
ବର ସାରସନେତ୍ରୀ ଯିବ ଭାସି ରେ ।
ବରଷାଇ ନେତ୍ର ଅଶ୍ରୁ ଧାରକୁ
ବସାଉଥିବ ତ ବସି ଉରକୁ ॥
(ପଦ୍ମମଣି ପଦ୍ୟାବଳୀ)

ମୀନନୟନା କ୍ଷୀଣ ହେବଣ ମୋ ବିନା ସେ ।
ଘନଘନ ସ୍ୱନ ଶୁଣି ଛନଛନ ହେବ ମନ
ମୀନକେତନ ଶରେ ଅପଘନ କମ୍ପନ
ମୁଞ୍ଚିବ ନୟନରୁ ଥନଥନ କଣ ବନ
ଭବନ କାନନ ସମାନ ମଣୁଥିବ ମୋ ଧନ ॥
(ସଙ୍ଗୀତ କଲ୍ପଲତା – କବିସୂର୍ଯ୍ୟ ବଳଦେବ ରଥ)

ଘନାଘନ ନିନଦ ଶୁଣି ହୋଇ ଉନ୍ମଦ
ତତ୍କ୍ଷଣେ ଜ୍ଞାନଶୂନ୍ୟ ହୋଇ
ଘଡ଼ିକରେ ଚେତନା ପାଇ କୁନ୍ଦରଦନା
ଆଳିଙ୍କି କହୁଥିବ ଗୁଣି
ରେ ବଳାହକ !
ଘନକାଳର ସହ୍ୟ ଦାଉ
ଘଟ ନ ରଖିପାରେ ଆଉ
ଘେନ ମୋ ନିବେଦନା କର ବୃଷ୍ଟି ସର୍ଜନା
ସଖି ! ମୋ ଜୀବ ବେଗେ ଯାଉ
(ବଳାହକ ଚଉତିଶା – ବ୍ରଜରାଜ ସିଂହଦେବ)

ଧୈର୍ଯ୍ୟ ଧରି ରହିବ କିଏ ଏଇ ମେଘୁଆ ପାଗେ
ତୁମେ ଅଛ ଦୂରେ ହାୟରେ ବୃଷ୍ଟି ନ ଦିଶେ ଆଗେ ॥
(୧୯୫୮ କବିତା—ଲକ୍ଷ୍ମୀ ନାରାୟଣ ସାହୁ)

ସାଥୀ ତ ନାହିଁ ଆଜ ଏ ଅଂଷାଢ଼ୀ ପ୍ରାତ
କଟିବ କିପରି ବ୍ୟଥିତ ନିଃଶ୍ୱାସେ
ଦରଜ ମୋର ହୃଦୟେ ଉଠି ମରୁ
ବୁଝିବ ମୁଁ ରହେ ଆଷାଢ଼ ଅକାଶେ ॥
(ଧୂପ – ମାୟାଧର ମାନସିଂହ)

ନାହିଁ ପାଶେ ପ୍ରିୟ ଆଜ ଏ ବାଦଲ ଜଣିଥେ
ଦମକାଏ ଘ୍ରୁତ ଚପଳା ଚଡ଼କ ସହିତେ ॥
• (ଲତିକା — ଅନୁପ ସିଂହଦେବ)

ଏ କାଳେ ସୁରତକଳହକୁପିତା କାନ୍ତା କମଳ ମୁଖେ
ଶାନ୍ତ କରଏ କାନ୍ତ କେ ଅବା ଭିଡ଼ରଖି ତାରେ ବୁକେ ।
ଉଦ୍‌ବେଗ ଆଣେ ଗର୍ଜନଶୀଳ ବାରଦ ବରଷା-ଭରେ
ପରବାସୀ-ବାମା ଚିନ୍ତା ଅସୀମ ଲଭଣ ସତତ ଝୁରେ ॥
(ଅଞ୍ଜଳି – ଦରଦୀ କବି)

ବରୁ ସେ ବଦରିଆ ବରସନ ଆଯେ
ଅପନୀ ଅବଧି ଜାନି ନନ୍ଦନନ୍ଦନ ! ଗରଜ ଗଗନ ଘନ ଛାଏ ॥
(ସୁର ସାଗର – ସୁର ଦାସ)

ଘନ ଘଂମଣ୍ଡ ନଭ ଗରଜତ ଘୋରା
ପ୍ରିୟାହୀନ ଡରପତ ମନ ମୋରା
(ରାମଚରିତ ମାନସ – ତୁଲସୀ ଦାସ)

ଆଗ ବନୀ ସାବନ କୀ ବରଖା
ଫୂଲ ବନେ ଅଙ୍ଗାରେ
ନାଗୀନ ବନ ଗଯୀ ରାତ ସୁହାନୀ
ପତ୍ଥର ବନ ଗୟେ ତାରେ ॥
(ବୈଜୁବାବରା ଚଲଚିତ୍ର — ଶକୀଲ ବାଦାୟୁନୀ)

ହେରଯା ଶ୍ୟାମଳ ଘନ ନୀଳ ଗଗନେ
ସଜଲ କାଜଲ-ଆଁଖି ପଡ଼ିଲ ମନେ ॥
(ବର୍ଷାବରଷା – ରବୀନ୍ଦ୍ରନାଥ ଠାକୁର)

ମେଘେର ପରେ ମେଘ ଜମେଛେ
ଆନ୍ଧାର କରେ ଆସେ
ଆମାୟ କେନ ବସିୟେ ରାଖ
ଏକା ଦ୍ୱାରେର ପାଶେ ।
ତୁମି ଯଦି ନା ଦେଖା ଦାଓ
କର ଆମାୟ ହେଲା
କେମନ କରେ କାଟେ ଆମାର
ଏମନ ବାଦଲ-ବେଲା ॥
(ଗୀତାଞ୍ଜଳି—ରବୀନ୍ଦ୍ରନାଥ ଠାକୁର)

ସାବନ କୀ ଘଟାଏଁ ଆଈଁ
ସରଶାର ହବାଏଁ ଆଈ
ସର୍ଦ ଅୟାନେ ମୁରାଦେଁ ପାଈଁ
ହମ କସ୍‌ସେ ନୈନ୍ ମିଲାଏଁ
ହାୟ ! ମର ଜାଏଁ ॥
(ଉର୍ଦ୍ଦୁକେ ପ୍ରେମଗୀତ – ଅବ୍‌ଦୁଲ ହମୀଦ)

ବିରହରେ ନାୟିକାରେ ଦେମାଙ୍କ:—
ବିପୁଲପୁଲକପୃଥୁବେପଥୁଭଙ୍ଗା
ଶ୍ୱସିତନିମୀଲିତବିକସଦନଙ୍ଗା ॥
(ଗୀତଗୋବିନ୍ଦ – ଜୟଦେବ)

ଚେତକେଣ ରମଣୀ ରମଣୀ ର ମଣି ଏକାନ୍ତେ ଚିନ୍ତୁଥିବ ବସି
ଚାଣ ଅନଳ ମଣିବ ଘନସାର ଘନସାରଜିତ ସୁକେଶୀ
କୋକିଳ, ଚଳିପଡ଼ୁଥିବ ମୋ ସଖି
ଚାଣକଚାକ୍ଷୀ ମୋ ଜୀମୂତ ଜୀମୂତ ଜୀମୂତ ଦେଖି ହେବ ଦୁଃଖୀ ॥୧୧

ଅନ୍ୱୟ – ରେ କୋକିଳ, ଚେତମନରେ ମୋ ରମଣୀ (ସୁନ୍ଦରୀ ରମଣୀ (ପ୍ରିୟା)ର (ଅଗ୍ନି) ମନେ କରି ଏକାନ୍ତରେ ବସି ଚିନ୍ତା କରୁଥିବ ।

ସେ ଘନସାର (ଶ୍ରେଷ୍ଠମେଘ) ଜିତ ସୁକେଶା ଘନସାର (କର୍ପୂର)କୁ ଟାଣ ଅନଳ ପରି ମଣିବ । ମୋ ଟାଣକଟାକ୍ଷୀ (କଟାକ୍ଷବତୀ) ଜୀମୂତ (ମେଘ) ଜୀମୂତ (ଇନ୍ଦ୍ର) ଓ ଜୀମୂତ (ପର୍ବତ)କୁ ଦେଖି ଦୁଃଖରେ ଟଳିପଡ଼ୁଥିବ ।

ଅର୍ଥ—ରେ କୋକିଳ, କେମନରେ ମୋ ସୁନ୍ଦରୀ ପ୍ରିୟା ଜଗତକୁ ଅଗ୍ନି ସମାନ ମନେ କରି ଏକାନ୍ତରେ ବସି ମୋ କଥା ଭାବୁଥିବ । ସେ ଘନକୃଷ୍ଣ କେଶା କର୍ପୂରକୁ ମଧ୍ୟ ଅଗ୍ନି ପ୍ରାୟ ମନେ କରୁଥିବ । ମୋ କଟାକ୍ଷ-ବତୀ ରାଧା ମେଘକୁ (କୃଷ୍ଣବର୍ଣ୍ଣ ହେବରୁ ମୋ କଥା ମନେ ପକାଇ) ଇନ୍ଦ୍ରଙ୍କୁ (ଇନ୍ଦ୍ର ପର୍ବତକୁ ବଜ୍ର ମାରେ ଓ ମୁଁ ତାକୁ ପର୍ବତପ୍ରନା ବୋଲି କହେ) ଓ ପର୍ବତକୁ (ଏଠାରେ ଗୋବର୍ଦ୍ଧନ ପର୍ବତ ଏଠାରେ କି ବହୁବାର ମିଳନ ହୋଇଥିବା) ଦେଖି ଦୁଃଖରେ ଭୂମିରେ ଟଳିପଡ଼ୁଥିବ ।

ବିରହିଣୀ ରାଧାର ଭୂମିଶୟନ:—

ଭ୍ରମତି ଭବନଗର୍ଭେ ନିର୍ନିମିତ୍ତଂ ହସନ୍ତୀ
ପ୍ରଥୟତି ତବ ବାର୍ତ୍ତାଂ ଚେତନାଚେତନେଷୁ
ଲୁଠତି ଚ ଭୁବି ରାଧା କମ୍ପିତାଙ୍ଗୀ ମୁରାରେ !
ବିଷମବିରହଖେଦୋଦ୍‌ଗାରବିଭ୍ରାନ୍ତଚିତ୍ତା ॥

(ଉଜ୍ଜ୍ୱଳନୀଳମଣି – ରୂପଗୋସ୍ୱାମୀ)

ଠିକେଣ ଦେଖିବ ଚଞ୍ଚଳା ଚଞ୍ଚଳା ଚଞ୍ଚଳା ଚଞ୍ଚଳା ଭଜିବ
ଠା ଠିକ ରୋହିତ ରୋହିତ ରୋହିତ ରୋହିତ ତାର ବିନାଶିବ ।
କୋକିଳ, ଠିକ ଶମ୍ବରର ଚର୍ଚ୍ଚିବ
ଠିକ କୁଚ ବଳାହକ ବଳାହକ ଦମ୍ଭନାଶନେ ଟାଣୁଥିବ ॥୧୨॥

ଅନ୍ୱୟ—ରେ କୋକିଳ, ମୋ ଚଞ୍ଚଳା (ଲକ୍ଷ୍ମୀ) ଚଞ୍ଚଳା (ଅସ୍ଥିର) ବିଜୁଳୀକୁ ଦେଖି ବିଚଳିତା ହେବ । ଇନ୍ଦ୍ରଧନୁ (ମେଘର ସୂଚନା) ପଦ୍ମରାଗ ଓ କୁଙ୍କୁମ (ପ୍ରୀତିପରଭାବ) ତାର ଧୈର୍ଯ୍ୟକୁ ନାଶ କରିବେ । ସେ ଠିକ ମଦନକୁ ବାଧ୍ୟ ହୋଇ ପୂଜା କରିବ । ତାର ପର୍ବତସମ ଉନ୍ନତ କୁଚ-

ଯୁଗଳଙ୍କୁ ମେଘର ଦମ୍ଭନାଶ ଲାଗି (ମେଘ ପର୍ବତଙ୍କୁ ଗ୍ରାସ କରେ) ଭଞ୍ଜି ଧରିଥିବ ।

ବିରହରେ ରାଧାର ବିଚଳିତ ଅବସ୍ଥା:—

ସା ରୋମାଞ୍ଚତି ଶୀତ୍କରୋତି ବିଲପତ୍ୟୁତ୍କମ୍ପତେ ତାମ୍ୟତି
ଧ୍ୟାୟତ୍ୟୁଦ୍‌ଭ୍ରମତି ପ୍ରମୀଳତି ପତତ୍ୟୁଦ୍‌ଯାତି ମୂର୍ଚ୍ଛତ୍ୟପି ॥

(ଗୀତଗୋବିନ୍ଦ—ଜୟଦେବ)

ବିରହତାପନାଶାର୍ଥେ କନ୍ଦର୍ପଙ୍କୁ ପ୍ରାର୍ଥନା: –

ରେ ରେ କନ୍ଦର୍ପ ଦୁର୍ନିବାର ମଦନଂ ପ୍ରୋତ୍ଫୁଲ୍ଲପଙ୍କେରୁହଂ
ବାଣଂ ସଂହର ସଂହର ତ୍ୟଜ ଧନୁଃ କଂ ପୌରୁଷଂ ମାଂ ପ୍ରତି ।
କାନ୍ତାସଙ୍ଗବିୟୋଗ-ଦୁଃଖ-ଦହନ-ଜ୍ୱାଲାବଲୀଢ଼ଂ ବପୁଃ
ଶୂରାଣାଂ ମୃତମାରଣେ ନହି ପରୋ ଧର୍ମଃ ପ୍ରୟୁକ୍ତୋ ବୁଧୈଃ ॥

(ସୁଭାଷିତ ରତ୍ନଭାଣ୍ଡାଗାର)

ତମୃଦୁ ମଧ୍ୟାର ଅଶୋକ ଅଶୋକ ଅଶୋକ ଅଶୋକ ନାଶିବ,
ତାଳମୂଦଣନମଣ୍ଡମା ଅଳୀକ ଅଳୀକ ଅଳୀକ କରିବ,
କୋକିଳ, ଡୋଳା ପ୍ରତିମା ଅବଳାକୁ
ଡୋଳାଇଲା ଚଉରୀକ ଚଉରୀକ ଚଉରୀକ ଚମ୍ପା ଶୋଭାକୁ ॥୧୬॥

ଅନ୍ୱୟ – ରେ କୋକିଳ, ମୋ ତମୃଦୁମଧ୍ୟାର ଅଶୋକ (ଶୋକ-ରହିତ) ଅଶୋକ (ସୁଖ) କୁ ଅଶୋକ (ଅଶୋକ କଢ଼) ଓ ଅଶୋକ (ପାରଦ) ନାଶ କରିବେ । ସେ ତାଳମୂଦଣନଶୋଭୀ ତାର ଅଳୀକ (ଲଲାଟ) କୁ ଅଳୀକ (ତୁଚ୍ଛ) ଅଳୀକ (ମିଥ୍ୟା) ମନେ କରିବ । ମୋ ଡୋଳା ପ୍ରତିମା ଅବଳା ଚମ୍ପାଶୋଭାକୁ ଚଉରୀକ (ପ୍ରାଙ୍ଗଣ) ଚଉରୀକ (ପକ୍ୱାବେଦୀ) ଓ ଚଉରୀକ (ଭ୍ରମର) ଡୋଳାଇଲା ।

ଅର୍ଥ—ରେ କୋକିଳ, ମୋ କ୍ଷୀଣମଧ୍ୟମାର ଶୋକଶୂନ୍ୟ ଓ ସୁଖମୟ ଜୀବନକୁ ଅଶୋକ କଢ଼ (ପ୍ରେମର ପ୍ରତୀକ) ଓ ପାରଦ (ପାରଦଧାରୁ ହଠାତ୍ ଶୂନ୍ୟ ହୋଇଯାଏ, ତେଣୁ ସେ ଜୀବନକୁ ଶୂନ୍ୟ ମନେ କରିବ) ତାକୁ ନାଶ

କରିବେ । ସେ ଭାଲମୁଦଶନଶୋଭୀ ତାର କପାଳକୁ ନତାନ୍ତ କ୍ଷୁଦ୍ର, ମିଥ୍ୟା ଓ ଅପ୍ରିୟ ମନେ କରିବ । ମୋ ତ୍ରୋଲାପ୍ରଥମା ଚମ୍ପକବରନାକୁ ଏବେ ତାର ସଖୀମାନେ ପ୍ରାଙ୍ଗଣସ୍ଥିତ ପଙ୍କ.ବେଦୀରେ ବସାଇ ଶ୍ରମର କରିବେ ବୋଲି ଯୋଗଥିଲ । (ରାଧାର ମୂର୍ଚ୍ଛିତାବସ୍ଥା)

ବିରହରେ ନାୟିର ମୂର୍ଚ୍ଛା:—

ସ୍ୱେଦ କମ୍ପୋଽଥରୋମାଞ୍ଚ ସ୍ୱରଭଙ୍ଗୋଽଥ ବେପଥୁଃ
ବୈବର୍ଣ୍ଣ୍ୟମଶ୍ରୁ ପ୍ରଲୟାବତ୍ୟଷ୍ଟୌ ସାତ୍ତ୍ୱିକା ମତାଃ ॥

(ନାଟ୍ୟଶାସ୍ତ୍ର—ଭରତ

ସ୍ମରଣେ ସଙ୍ଗମେ ଚୈବ ପ୍ରିୟସ୍ୟାଽଲକନେ ତଥା
ହେତୁତ୍ରୟଂ ସମାସାଦ୍ୟ ସାତ୍ତ୍ୱିକଃ ସମ୍ପ୍ରବର୍ତ୍ତତେ ॥

(ନାଟ୍ୟଶାସ୍ତ୍ର - ଭରତ)

ମନ ତାର ବୃନ୍ଦାବନ ଦହଇ କାମ-ଦହନ
କ୍ଷଣେ କ୍ଷଣେ ଶୂନ୍ୟଜ୍ଞାନ ହୋଇ ସୁକେଶୀ

(ଲୀଳାବତୀ – ରଘୁନାଥ ହରିଚନ୍ଦନ)

ଶଶିଶୋଭାନନ୍ଦୀ ବଦନେ ତାହାର
କଳଙ୍କ-କାଳିମା ରାଜେ
ସଙ୍କଲେପ ହେଉ ମୋ ମନ-ବୀଣାରେ
କରୁଣ-ମୂର୍ଚ୍ଛନା ବାଜେ ॥

(ସତୀରଶଳ୍ପ – ଦାରସୀକବି)

ବିରହିଣୀର ମୂର୍ଚ୍ଛାରେ ସଖୀମାନଙ୍କର ଉପଚାର:—

ତଦା ନଷ୍ଟଦାଙ୍ଗୀ କଳତଳନଳୀପଲ୍ଲବକୁଳୈଃ
ପରୀଣାହାନ୍ତ ପ୍ରେମ୍ ଣାମକୁଶଲମୁତାଶଙ୍କି ହୃଦୟେ ।
ଦୁରନ୍ତୋ ଗମ୍ଭୀରୀକୃତ ମିହିରପୁତ୍ରୀଲହରଭି—
ର୍ବିଲୀନା ଧୂଳୀନ.ମୁପରି ପରିବବ୍ରେ ପରିଜନୈଃ ॥

(ହଂସଦୂତ—ରୂପଗୋସ୍ୱାମୀ)

ମନ୍ଦନସ୍ୱାନ ସୁଧା ଅପସନେ
କମଳପଦେ ଆବଶ ସଘନେ
ସଜନୀ ଦୁଃଖ ଖାଳ,
ବେଢ଼ି ସ୍ୱେଦରେ ମୂର୍ଚ୍ଛିଲେ ଯେବେ
ଅଶ୍ରୁ ସକଳ ଆଳ,
ଅର୍କତନୟା କଲ୍ଲୋଳେ ଗଲ୍ଭ ସୁଲ ।।
(ହଂସଦୂତ—ଦରବୀକବି)

ଚଳାଥିବ ନିଜ କଦମ୍ବ, କଦମ୍ବ, କଦମ୍ବ, କଦମ୍ବ ଶଯ୍ୟାରେ
ତାଲେ ଯେନ ପଦ୍ମ କୋରକ କୋରକ କୋର କରି ତାରପ୍ରକାରେ
କୋକିଳ, ତାଲେ ନ ପୁଛିବ ସେ ଧୀରେ
ତାଲେ ରଖିଥିବ ସୁପର୍ଣ୍ଣ ସୁପର୍ଣ୍ଣ ସୁପର୍ଣ୍ଣ ନ ରଖି ଅଙ୍ଗରେ ।।୧୪।।

ଅନ୍ୱୟ – ରେ କୋକିଳ, ସେ କଦମ୍ବ (ବ୍ୟାକୁଳ) କଦମ୍ବ (କଦମ୍ବ-ଫୁଲ) କଦମ୍ବ (ସର୍ଷପ – ଏଠାରେ କେଶର) କଦମ୍ବ (ସମୂହ) ଶଯ୍ୟାରେ ଚଳାଥିବ । ସେ ତାଲେ (କିଜାଏ) ହେଲେ ପଦ୍ମକୋରକ (ମୃଣାଳ ଅଂଶ) କୋରକ (ସୁଗନ୍ଧ ବିଶେଷ) ଓ କୋର (କଢ଼) କୁ ର (ଅଗ୍ନି) ପ୍ରାପ୍ତ ମନେ କରିବ । ସେ ଆଉ ମୋତେ ତଲେ ହେଲେ ପୁଛିବ ନାହିଁ । ସେ ସୁପର୍ଣ୍ଣ (ସ୍ୱର୍ଣ୍ଣଚୂଡ଼ା) ଅଙ୍ଗରେ ନ ରଖି ସୁପର୍ଣ୍ଣ (କୋମଳପତ୍ର) ଓ ସୁପର୍ଣ୍ଣ (ନାଗ-କେଶର) ରଖିଥିବ ।

ଅର୍ଥ – ରେ କୋକିଳ, ସେ ବ୍ୟାକୁଳ ହୋଇ କଦମ୍ବଫୁଲର କେଶର-ଗୁଡ଼ିକରେ ଶଯ୍ୟା ରଚନା କରି ଶୋଇଥିବ । ସେ ଆଉ ମୋତେ ଅଭିମାନ କରି କିଜାଏ ହେଲେ ପୁଛିବ ନାହିଁ । ସେ ତାର ଦେହରେ ସ୍ୱର୍ଣ୍ଣ ଆଭରଣମାନ ନ ରଖି କେବଳ ନାଗେଶ୍ୱର ଫୁଲ ଓ କୋମଳ ପତ୍ରଶଯ୍ୟାରେ ଶୋଇଥିବ ।

ବିରହିଣୀର ବ୍ୟାକୁଳତା ଓ ନିବେଦନ:—

ଶଢ ସମ୍ପଦ ପାଇଁ ଅଧରରୁ ସୁଧା ପିଇ ସେ ଏବେ ପାଲଟିଛି ବିଷ'
ଶଶୀରଠାରେ ହୁତ ବହ୍ନି ଜଳ ଯେମନ୍ତ ସନ୍ନିପାତରେ କରେ ନାଶ

ହେ ଶ୍ୟାମ ବନ୍ଧୁ !
ଶଶୀ ସ୍ଵଭାବକୁ ନ ଘେନ
ଶୁଭରୁଚର ନସ ଯେପନ
ଶୀତଳ ସର୍ବକର ହୋଏ ଅନଳ ସର ପ୍ରୀତବଚ୍ଛେଦୀ ଯେତେ ଜନ ॥
(ଲ୍ଲାବଣ୍ୟବତୀ—ଉପେନ୍ଦ୍ର ଭଞ୍ଜ)

ବିରହତାପନାଶାର୍ଥେ ବିରହିଣୀର ପୁଷ୍ପ ଓ କୋମଳପତ୍ର ଶଯ୍ୟା! –
କୁସୁମବିଶିଖଶରତଳ୍ପମନଳ୍ପବିଳାସକଳାକମନୀୟମ୍
ବ୍ରତମିବ ତବ ପରିରମ୍ଭସୁଖାୟ କରୋତି କୁସୁମଶୟନୀୟମ୍ ॥
(ଗୀତଗୋବିନ୍ଦ – ଜୟଦେବ)

ନବକିସଳୟତଳ୍ପଂ କଳ୍ପିତଂ ତାପଶାନ୍ତ୍ୟୈ
କରସରସିଜସଙ୍ଗାତ୍ କେବଳଂ ମ୍ଳାପୟନ୍ତ୍ୟାଃ ।
କୁସୁମଶରକୃଶାନୁପ୍ରାପିତାଙ୍ଗାରତାୟାଃ
ଶିବ ଶିବ ପରତାପଂ କୋ ବଦେତ୍ କୋମଳାଙ୍ଗ୍ୟାଃ ॥
(ପୁଷ୍ପବାଣବିଳାସ—କାଳିଦାସ)

ବିରହିଣୀର ସ୍ଵର୍ଣ୍ଣାଭରଣ ତ୍ୟାଗଃ –
କୁସୁମଶୟନଂ ନ ପ୍ରତ୍ୟଗ୍ରଂ ନ ଚ ଚନ୍ଦ୍ରମରୀଚୟୋ
ନ ଚ ମଳୟଜଂ ସର୍ବାଙ୍ଗୀଣଂ ନ ବା ମଣିଯଷ୍ଟୟଃ ।
ମନସିଜରୁଜଂ ସା ବା ଦିବ୍ୟା ମମାଲମପୋହିତୁଂ
ରହସି ଲଘୟେଦାରବ୍ଧା ବା ତଦାଶ୍ରୟିଣୀ କଥା ।
(ବିକ୍ରମୋର୍ବଶୀୟ – କାଳିଦାସ)

ଏକ କର କୁଚେ ଜଘନ କଦଳୀ କଦଳ କଦଳୀ-ନୟନେ
ଏବେ ମଣୁଥିବ ରମଣୀ ପାବକ ପାବକ ପାବକ ସମାନେ
କୋକିଳ, ଆହା ମୋ ପ୍ରିୟୁରସକଳା
ଅଙ୍ଗନା ସାରଙ୍ଗ ସାରଙ୍ଗ ସାରଙ୍ଗ ବଚନ ଶୁଣି ହେବ ଭୋଳା ॥୧୬॥

**ଅନ୍ଵୟ** – ରେ କୋକିଳ, ମୋ କଦଳୀ (ମୃଗ) ନୟନା କ (ଶିର) ଦଳ (କୋଡ଼) ତାର ଜଘନ କଦଳୀ (ରମ୍ଭା ଉରୁ) ଓ କୁଚକୁ ଏକ କର

ବସିଥିବ । ଏବେ ଯେ ରମଣୀ ପାବକ (କୁସୁମ) କୁ ପାବକ (ସୂର୍ଯ୍ୟ) ଓ ପାବକ (ଅଗ୍ନି) ସମାନ ମଣୁଥିବ । ମୋ ରସବନ୍ତୀ ଅଙ୍ଗନା (ନାରୀ) ସାରଙ୍ଗ (କୋକିଳ) ସାରଙ୍ଗ (ମୟୂର) ଓ ସାରଙ୍ଗ (ଚାତକ) ର ସ୍ୱନ ଶୁଣି ବ୍ୟାକୁଳ ହେଉଥିବ ।

ଅର୍ଥ—ରେ କୋକିଳ, ମୋ ମୃଗନେତ୍ରୀ ରମଣୀକୁ ରାଧା ଶିର କୋଡ଼ ତାର କୁଚଯୁଗଳକୁ ଏକାଠି କରି ଅର୍ଥାତ୍ ଦୁଇ ହସ୍ତରେ ବକ୍ଷକୁ ଚାପି ରଖି ବସିଥିବ । ସେ ରମଣୀ କୁସୁମକୁ ସୂର୍ଯ୍ୟ ଓ ଅଗ୍ନି ପରି ମନେ କରୁଥିବ । ମୋ ରସବତୀ ରାଧା କୋକିଳ, ମୟୂର ଓ ଚାତକର ସ୍ୱନ ଶୁଣି ବିହ୍ୱଳା ହେଉଥିବ ।

ସାରଙ୍ଗ ଶବ୍ଦର ଅନ୍ୟତ୍ର ପ୍ରୟୋଗଃ—

ସାରଙ୍ଗରଦ ପଲଙ୍କେ ସାରଙ୍ଗ ପଙ୍କିଲ ପଙ୍କେ
ସାରଙ୍ଗମୁଖୀ ସାରଙ୍ଗ ସାରଙ୍ଗରେ ମାଡଲେ ॥
(ସଙ୍ଗୀତ ଉପେନ୍ଦ୍ର ଭଞ୍ଜ)

ସାରଙ୍ଗଦନ୍ତ ପଲଙ୍କେ ସାରଙ୍ଗେ ଯେଜନ ନିଃଶଙ୍କେ
ଶାରଙ୍ଗମୁଖୀ ସାରଙ୍ଗ କେଳି ସୁନ୍ଦରେ
ସାରଙ୍ଗନାଳ ବାହୁରେ କାନ୍ତ ଭିଡ଼ି ସାରଙ୍ଗରେ
ସାରଙ୍ଗ ଉପରୁ ଶୀଘ୍ର ଟୋଳି ସେ ନେଲେ
ସାର ପ୍ରେମେ ସାରଙ୍ଗରଣ
ସହଜେ ଭଜିଲେ ଶାନ୍ତ ମୃଗଲ ପ୍ରାଣ ॥
(କମଳାକାନ୍ତ ଚଉତିଶା—ଦୀନକୃଷ୍ଣ)

ସାରଙ୍ଗ ନୟନ ବୟନ ସୁଜ ସାରଙ୍ଗ
ସାରଙ୍ଗ ତନୁ ସମ ଧାନେ
ସାରଙ୍ଗ ଉପରେ ଉଲଗ ଦସ ସାରଙ୍ଗ
କାଲି କରଥ ମଧୁପାନେ ॥
(ବିଦ୍ୟାପତି ରଚନାବଳୀ)

ପକ୍ଷିସ୍ୱନ ଶ୍ରବଣରେ ବିରହୀ-ବିରହିଣୀର କାମତାପ ବୃଦ୍ଧି!—

ଶିଖିନୀ ମନ୍ମଥାର୍ତ୍ତୈଷା ଭର୍ତ୍ତାରଂ ଗିରିସାନୁଷୁ
ତାମେବ ମନସା ରାମାଂ ମୟୂରୋଽପ୍ୟୁପଧାବତି ॥
(ବାଲ୍ମୀକି ରାମାୟଣ)

ବାୟୁର୍ଦ୍ଦକ୍ଷିଣତଃ ଶିଖୀ ଚ ପୁରତୋ ଭୃଙ୍ଗଧ୍ୱନିର୍ବାମତଃ
ପଶ୍ଚାଦ୍ ହଂସଚକ୍ରବାକରୁଦିତଂ ଗ୍ରୈଷ୍ମଂ ସୁଧାଦୀଧିତେ ।
ଇତ୍ଥଂ ଦୁଃସହପଞ୍ଚତାପସହିତେ ମଧ୍ୟେ ମୟା ଧାୟତା
ନେଷ୍ୟନ୍ତେ କଲିତପ୍ରଜାଗରଭରୈରତ୍ୟନ୍ତଦୀର୍ଘାନିଶାଃ ॥
(ମହାନାଟକ—ହନୁମନ୍ତ କବି)

ବିୟଦୁପଚିତମେଘଂ ଭୂମୟଃ କନ୍ଦଲିନ୍ୟୋ
ନବକୁଟଜକଦମ୍ବାମୋଦିନୋ ଗନ୍ଧବାହାଃ
ଶିଖିକୁଲକଲକେକାରାବରମ୍ୟା ବନାନ୍ତା
ସୁଖିନମସୁଖିନଂ ବା ସର୍ବମୁତ୍କଣ୍ଠୟନ୍ତି ॥
(ଶୃଙ୍ଗାରଶତକ — ଭର୍ତ୍ତୃହରି)

ମାଲାମ୍ଭୋଧରସାନ୍ଦ୍ରତାଂ ଦିଶିଦିଶି ପ୍ରାବୃଣ୍ମହୀ ସାନ୍ଦ୍ରସ
ସୌଦାମିନ୍ୟ ଇମାଃ ସ୍ଫୁରନ୍ତି ପରିତଃ କୂଜନ୍ତ୍ୟମୀ ବର୍ହିଣଃ ।
ବର୍ଷର୍ତ୍ତୁଃ ସମୁପାଗତଃ ପ୍ରିୟତମେ ପୁଷ୍ପାମ୍ବୁଧୋଦ୍ଦୀପକଃ
କାଲେଽସ୍ମିନ୍ ରସିକଂ ସମୀକ୍ଷ୍ୟ ମଧୁରଂ ମେ ଦେହି ଦାନଂ ତନୋଃ ॥
(ରସିକାଷ୍ଟକକାବ୍ୟ—ନାରାୟଣ ଭଟ୍ଟ)

ପିକଶିଖିକଲହଂସପ୍ରାୟପକ୍ଷିବ୍ରଜାନାଂ
ସ୍ୱରଗତମନୁକରୋତ୍ୟଙ୍ଗନା ମନ୍ମଥାର୍ତ୍ତା ॥
(ପଞ୍ଚସାୟକ — କବିଶେଖର ଜ୍ୟୋତିରୀଶ୍ୱର)

ନାଚେ ବରହୀ ରହି          ନଦେ ଭେକହିଁ କହି
କାମୀ ପ୍ରଳପ୍ସୁ ବହି ବହି
ଶୁଣି ନ ସହି ସଖି          ତରବ ମସି ମହଲାକୁ
ଯେ ଯାଇ ନାହିଁ ନାହିଁ
ହେ ଜଳଧର !

କଦମ୍ବ ଗନ୍ଧ ବନ୍ଧୁ ବନ୍ଧୁ
ବାତ ଥିବ ମୋଦ ହିଁ ଦନ୍ଧ
ମୋ ପଥ ରୁନ୍ଧି ରୁନ୍ଧି          ଥିବ ସୁନ୍ଦରୀ ମନ୍ଦି
ପାପୀ ଦନ୍ଦେ ଅଦେଖା ଦେଖା ॥
(ରସିକ ହାରାବଳୀ – ଉପେନ୍ଦ୍ର ଭଞ୍ଜ)

ଦନେ ଘନସାର ସାର          ଭଣ ପାନ ତାର ତାର-
ବରମୁଖୀ ଦେଉଁ ବାର ବାର
ଡାକନ୍ତେ ମୟୂର ଉର          ଉଲ୍ଲସି ଦର୍ଦ୍ଦୁର ଦୂର
ଚେତା କମ୍ପ ହୋଇ ଥର ଥର
ହେ ଜଳଧର !
ଯାଚନ୍ତି ସେ ହୋଇ ତର ତର
ମୋତେ ରୁଚ୍ଛା କର କର –          ଖେଦରୁ ମୁଁ ନଖର ଖର
ଟିପୁଁ ନେତ୍ର ଲଜେ ଜର ଜର ॥
(ପ୍ରେମସୁଧାନିଧି—ଉପେନ୍ଦ୍ର ଭଞ୍ଜ)

ଘନାବୃତ ବ୍ୟୋମ ନୂତନ ଅଙ୍କୁର ଶାଦ୍ୱଳାବୃତ ମହୀ ପ୍ରଦେଶ
ନବ ଗିରି ମଲ୍ଲୀ କଦମ୍ବ କଦମ୍ବବାସଗର୍ଭିତ ପୁଷ୍ପଦେଶ
ମୟୂର-କେକା ନିଃସ୍ୱନ ମୁଖରିତ
ବନାନ୍ତ କି ସୁଖୀ କି ଦୁଃଖୀ ସକଳ ଜନଙ୍କୁ କରେ ଉତ୍କଣ୍ଠିତ ॥
(ଉଦ୍ଭିଦର ସୁଷ୍ମଷ୍ଟି—ରାଧାମୋହନ ରାଜେନ୍ଦ୍ରଦେବ)

ତା ନେତ୍ର କରିବ ସାରଙ୍ଗ ସାରଙ୍ଗ ଶାରଙ୍ଗ ଧରସୁନୁ ବାଣ
ତରୁଣୀ ନ ଖେନ ଅଶନ ଅମୃତ ଅମୃତ ଅମୃତ କରଣ
କୋକିଳ, ଭୃଙ୍ଗସ୍ତନୀ କେହ୍ନେ ବଞ୍ଚିବ
ତାର ରୁନ୍ଧ ହେଲେ ଶ୍ରୀକଣ୍ଠ ଶ୍ରୀକଣ୍ଠ ଶ୍ରୀକଣ୍ଠ-ଭୂଷଣ ଚନ୍ଦ୍ରବ ॥୧୭॥

ଅନ୍ୱୟ—ରେ କୋକିଳ, ତାର ସାରଙ୍ଗ (ସୁକାନ୍ତ) ନେତ୍ରକୁ ଶାରଙ୍ଗଧର (ବିଷ୍ଣୁ) ସୁନୁ (ପୁତ୍ର) ସାରଙ୍ଗ (ବିଦ୍ଧ) କରିବ । ଯେ ତରୁଣୀ

ଅମୃତ (କ୍ଷୀର) ଅମୃତ (ଲବଣୀ) ଓ ଅମୃତ (ଅନ୍ନ) ଅଶନ (ଭୋଜନ) କରିବ ନାହିଁ । ସେ ଭୁଙ୍ଗପ୍ରନା (ଉନ୍ନତପୟୋଧରା) କପରି ବଞ୍ଚିବ । ତାର ଶ୍ରୀକଣ୍ଠ (ଶୋଭାଯୁକ୍ତ କଣ୍ଠ) ରୁଦ୍ଧ ହେଲେ ସେ ଶ୍ରୀକଣ୍ଠ (ଶିବ) ଓ ଶ୍ରୀକଣ୍ଠ-ଭୂଷଣ (ଲକ୍ଷ୍ମୀଙ୍କର କଣ୍ଠଭୂଷଣ – ବିଷ୍ଣୁ) ଙ୍କୁ ଧ୍ୟାନ କରିବ ।

ଅର୍ଥ—ରେ କୋକିଳ, ତାର କାନ୍ତିଯୁକ୍ତ ନେତ୍ରକୁ କନ୍ଦର୍ପ ନାଶ କରିବ ଅର୍ଥାତ ହତଶ୍ରୀ କରିବ । ସେ ତରୁଣୀ ଦୁଃଖରେ କ୍ଷୀର, ଲବଣୀ ଓ ଅନ୍ନ ଗ୍ରହଣ କରିବ ନାହିଁ । ସେ ପୀନପୟୋଧରା କପରି ବଞ୍ଚିବ । ତାର ଶୋଭାଯୁକ୍ତ କଣ୍ଠ ରୁଦ୍ଧ ହେଲେ ସେ ଶିବ ଓ ବିଷ୍ଣୁଙ୍କ ସ୍ମରଣ କରିବ ।

ବିରହିଣୀର ଶିବ ଓ ବିଷ୍ଣୁଙ୍କୁ ଆରାଧନା: –

ଦେବତା ପୂଜନଂ କୁର୍ଯାଦଦ୍ୟାତ୍ତୁ ବଳିଭୁଜେ ବଳିମ୍
ଲଖେତ୍ତୁକାନ୍ତପ୍ରତିକୃତିଂ ପାଠୟେଚ୍ଛୁକସାରିକାଃ ।
ରଣୟେଚ୍ଚାପଧ୍ୱନିଂ ଗୀତଂ ଗାୟେଦ୍ଉଦ୍‌ଗୀତିମ୍
ଏବଂ ବିଧବିନୋଦେନ ନୟେତ୍କାଲଂ ବିୟୋଗିନୀ ॥

(ନାଟ୍ୟଶାସ୍ତ୍ର – ଭରତ)

ଭରତଙ୍କ ନାଟ୍ୟଶାସ୍ତ୍ର ଭିତ୍ତିରେ କାଳିଦାସଙ୍କର ବିରହିଣୀ କାର୍ଯ୍ୟ ବର୍ଣ୍ଣନା: –

ଆଲୋକେ ତେ ନିପତତି ପୁରା ସା ବଳିବ୍ୟାକୁଳା ବା
ମତ୍ସାଦୃଶ୍ୟଂ ବିରହତନୁ ବା ଭାବଗମ୍ୟଂ ଲିଖନ୍ତୀ ।
ପୃଚ୍ଛନ୍ତୀ ବା ମଧୁରବଚନଂ ସାରିକାଂ ପଞ୍ଜରସ୍ଥାଂ
କାଚିଦ୍‌ଭର୍ତ୍ତୁଃ ସ୍ମରସି ରସିକେ ! ତ୍ୱଂ ହି ତସ୍ୟ ପ୍ରିୟେତି ॥

(ମେଘଦୂତ – କାଳିଦାସ)

ମୁହୁଃ ଶୂନ୍ୟାଂ ଦୃଷ୍ଟିଂ ବହସି ରହସି ଧ୍ୟାୟସି ସଦା
ଶୃଣୋଷି ପ୍ରତ୍ୟକ୍ଷଂ ନବପରିଜନଜଳ୍ପନଶତଂ ।
ତତଃ ଶଙ୍କେ ପଙ୍କେରୁହଦଳମୁଖୀ ଶ୍ୟାମଳରୁଚାଃ
ସ ଯୂନାମୂର୍ଦ୍ଧଂ ସନ୍ତ୍ରବନସ୍ତ୍ରନଗାଥୀପଥିକତାମ୍ ॥

(ହଂସଦୂତ—ରୂପଗୋସ୍ୱାମୀ)

ବାଚ୍ୟେ ମାଙ୍ଗଲିକାଃ ପ୍ରୟାଣସମୟେ ଜଲ୍ପନ୍ତ୍ୟନଲ୍ପଂ ଜନେ
କେଳିମନ୍ଦିରମାରୁତାୟନମୁଖେ ବିନ୍ୟସ୍ତବକ୍ତ୍ରାମ୍ବୁଜା ।
ନିଃଶ୍ୱାସଗ୍ଲପିତାଧରୋପରିପତଦ୍‌ବାଷ୍ପାର୍ଦ୍ରବକ୍ଷୋରୁହା
ବାଲାଲୋଲବିଲୋଚନା ଶିବ ଶିବ ପ୍ରାଣେଶ ଆଲୋକତେ ॥
(ରସଗଙ୍ଗାଧର—ପଣ୍ଡିତରାଜ ଜଗନ୍ନାଥ)

ବାରେ ବାରେ ଶିବ ଶିବ ସେ ଘୋଷେ
ବାରେ ବାରେ ବ୍ରତମାନ ମନାସେ
ବାରେ ବାରେ ନାହିଁ ମୂର୍ଚ୍ଛାରେ ପଶୀ
ବାରେ ବାରେ ଭସ୍ମ ସଶ୍ରସ୍ମ ରଖି
ବନରୁହ ନାଡ଼
ବନଜାକ୍ଷୀ ଦେଖି ଚନ୍ଦ୍ରେ ଗରୁଡ଼ ॥
(ବୈଦେହୀଶବିଳାସ—ଉପେନ୍ଦ୍ର ଭଞ୍ଜ)

ପୁଷ୍ପ ପବ ପ୍ରଭପ୍ରଭ ଭ୍ରମୁ ସ୍ୱବେ ଭୃଙ୍ଗ
ଶ୍ରୀମ ବାଷ୍ପ ଭବ ଭବେ ଭବ ଖବ ଖବ
ଭବ-ପ୍ରଭବୀ ଭୂମିପ ପ୍ରଭାବ ବିଭବେ
ବିଭୋ ! ପ୍ରଭୋ ! ଶ୍ରୀମ ଭ୍ରମେ ଭ୍ରମି ଭ୍ରମି ଭାବେ ॥
(ପ୍ରେମସୁଧାନିଧି – ଉପେନ୍ଦ୍ରଭଞ୍ଜ)

ଘଟେ କି କରିବେ ହର-ଗହଣ
ପ୍ରବାସୁ ମୋ କାନ୍ତ ଆସିବେ ଫେରି
କରିବେ ଅଙ୍କ ପଲଙ୍କେ ଶୟନ
ଘଟେ କି ମୋ ଦୁଃଖ ହେବ ଦହନ
କରି ରସକେଳି
ଭଣେ ଉପଇନ୍ଦ୍ର ଏ ରସେ ଭାଳି ॥
(ସଙ୍ଗୀତ ଉପେନ୍ଦ୍ର ଭଞ୍ଜ)

ବରବରନା ମୋ ବରଷାଇ ବାଣ ବରଷକର ଏ ଦିନେ
ବର ମାସ୍ମଥିବ ବରଦେବ ପଦେ ବରଜ ସୁଧା ଭୋଜନ

ବରଗବ କ ପ୍ରାଣେ
ବରହୂଳ-ଉରଜା ମୋ ହନେ ॥
(ବିରହବାନ୍ଧବୀ—ଦରାପୀକବି)

ବୃନ୍ଦାବତୀ ପାଶେ ଓଳଗି ହୋଇଣ
ଜଣାଇଲେ ନିଜ ଦୁଃଖ
ବିରହିଣୀ ବାମା ନିବେଦିଲ ଚହିଁ
ପତିର ମିଳନସୁଖ ॥
(ପଲ୍ଲୀପ୍ରୀତି—ଦରାପୀକବି)

କୃଷ୍ଣ ଚରିତ ଭଲ ଏକାନ୍ତେ ଚିନ୍ତନ୍ତ ମନେ ରାଧା,
ଭିଦେ 'ଆସିଲ ଦୃଷ୍ଟି ତାହାର ଲକ୍ଷଣ ବିରହ-ବାଧା,
କର୍ଣ୍ଣେ ତାହାର ଶୁଣାଅ ହେ ମଧୁବାର୍ତ୍ତା,
ବିରହ-ବହ୍ନି ତାପେ ସେ ଦଗ୍ଧା ଆର୍ତ୍ତା,
କୃଷ୍ଣ-ଆଗମନ-ଅୟନେ,
ଗ୍ରହିଛି ଆଶା ସ୍ତ୍ରୀ-ନୟନେ,
ପଙ୍କଜମୁଖୀ ରାଇ,
କୃଷ୍ଣ-ଚରଣେ ହେ ବାଇ
(ହଂସଦୂତ—ଦରାପୀକବି)

ଥିବ ଦୂର କରି ପୁଲକ ପୁଲକ ପୁଲକ ଅଙ୍ଗେ ହେବ ଜାତ
ଥିର ଗତି ନିନ୍ଦେ ମଲ୍ଲିକା ମଲ୍ଲିକା ମଲ୍ଲିକା ଗନ୍ଧେ ହେବ ନତ
କୋକିଳ, ଥିଲକ ତାକୁ ଏତେ ଦଶା
ଅରେ ନାଶୁଥିବ ବିବେକ ବିବେକ ବିବେକ ଆହା
ମୋ ସୁଦୃଶା ॥୧୭॥

ଅନ୍ୱୟ – ରେ କୋକିଳ, ସେ ପୁଲକ (ମଣିବିଶେଷ) ପୁଲକ (ହର୍ଷ) ଦୂର କରିଥିବ ଓ ତା ଅଙ୍ଗରେ ପୁଲକ (ରୋମାଞ୍ଚ) ଜାତ ହେଉଥିବ । ତାର ଥିର ଗତି ମଲ୍ଲିକା (ହଂସୀ) କୁ ନିନ୍ଦା କରେ । ସେ ମଲ୍ଲିକା (ମଲ୍ଲୀଫୁଲ)

ଓ ମଲ୍ଲିକା (ମୀନ) କୁ ଦେଖି ନତ ହେବ । ତାକୁ ପୁଣି ଏତେ ଦଶା ଥିଲା ? ସେ ପୂର୍ବଦଶାର ବିବେକ (ବିରାଗ – ଏଠାରେ ବିଶେଷ ରାଗ ବା ଅନୁରାଗ) ବିବେକ (ବିଚ୍ଛୁର) କୁ ଏବେ ବିବେକ (ଉଦାସୀନଭାବ) ନାଶ କଲା ।

ଅର୍ଥ – ରେ କୋକିଳ ସେ ମଣିଚନ୍ଦ୍ର ଓ ହର୍ଷ ତ୍ୟାଗ କରିବ । ତା ଅଙ୍ଗରେ ରୋମାଞ୍ଚ ଜାତହେଉଥିବ । ତାର ଧୀର ଗମନ ହଂସଗତିକୁ ନିନ୍ଦାକରେ । ସେ ମଲ୍ଲୀଫୁଲ ଓ ମୀନକୁ ଦେଖି (ମୁଁ ତାକୁ ମୀନନୟନା ବୋଲି ଡାକେ, ଏଣୁ ମୋ କଥା ମନେ ପକାଇ) ଦୁଃଖରେ ନଇଁ ପଡ଼ିବ । ମୋ ପୂର୍ବଦଶାକୁ ଏତେ ଦଶା ଥିଲା ! ମୋ ପ୍ରତି ତାର ଅନୁରାଗପୂର୍ଣ୍ଣ ବିଚ୍ଛୁରକୁ ବା ଭାବକୁ ବର୍ତ୍ତମାନ ବିରହ-କାଳୀନ ଉଦାସୀନତା ନାଶ କରୁଥିବ ।

ନାରୀ ଅଙ୍ଗରେ ରୋମାଞ୍ଚ:—

ତନୁସ୍ପର୍ଶାଦସ୍ୟା ଦରମୁକୁଳିତେ ହନ୍ତ ନୟନେ
ଉଦଞ୍ଚଦ୍ରୋମାଞ୍ଚ ବ୍ରଜତି ଜଡ଼ତାମଙ୍ଗମଖିଳମ୍ ।।
କପୋଲୌ ଘର୍ମାଦ୍ରୌ ଧ୍ରୁବମୁପରତାଶେଷବିଷୟଂ
ମନଃ ସାନ୍ଦ୍ରାନନ୍ଦଂ ସ୍ପୃଶତି ଝଟିତି ବ୍ରହ୍ମପରମମ୍ ।।

(ସାହିତ୍ୟଦର୍ପଣ—ବିଶ୍ୱନାଥ କବିରାଜ)

ମଲ୍ଲୀଫୁଲ ଦର୍ଶନରେ ବିରହିଣୀ:—

ଦରବିଦଳିତ ମଲ୍ଲୀବଲ୍ଲିଚଞ୍ଚତ୍ପରାଗ –
ପ୍ରକଟିତପଟବାସୈର୍ବାସୟନ୍ କାନନାନି
ଇହ ହି ଦହତି ଚେତଃ କେତକୀଗନ୍ଧବନ୍ଧୁଃ
ପ୍ରସରଦସମବାଣପ୍ରାଣବଦ୍‌ଗନ୍ଧବାହ ।।

(ଗୀତଗୋବିନ୍ଦ—ଜୟଦେବ)

ଯେତେ ସୁଧୀର ମହିଳା ହୋଇଥିବ
ମଧୁମାସେ ଯେବେ ବିରହିଣୀ ହେବ
ଦେଖି ମଲ୍ଲୀ, ମଲି ବୋଲି ଚମକିବ ।।

(ଲାବଣ୍ୟବତୀ – ଉପେନ୍ଦ୍ର ଭଞ୍ଜ

ଭୃଙ୍ଗ ଭୋଗ ଚନ୍ଦ୍ର ମଲ୍ଲୀ
ଦେଖି ଦେଖାନ୍ତି ଠାରି ଦେଇ ମଲ୍ଲି
ଏହା ଦେଖି କାହିଁକି ନ ମଲି, ସଜନି ରେ !

(ବିଦଗ୍ଧ ଚିନ୍ତାମଣି – ଅଭିମନ୍ୟୁ)

ବୃନ୍ଦେ ମଲ୍ଲୀ ବିକାଶ     ମଲ୍ଲି ବୋଲି ବାଳୀଶ
ଭାଳି ଚିନ୍ତିବ କାଳୀଧବ
ଚମ୍ପା ଶମ୍ପାର ଗର୍ବ     ଯା ଝଳି କରେ ଖର୍ବ
ସେ ଅଙ୍ଗ ମଳିନ ହଶିବ
ରେ ବଳାହକ !
ଚିତ୍ରପୁରକୁ ଯେବେ ଯିବ
ଚିତୋଇ ମୋତେ ଛନ୍ନ ହେବ
ଚିତ୍ର ପ୍ରତିମା ପରି     ଚେତନା ଦୂର କରି
ଭିତ୍ତିକି ଆଉଜି ରହିବ ॥

(ବଲାହକ ଚଉତିଶା—ବ୍ରଜରାଜ ସିଂହଦେବ)

ସୁଖଭୋଗ ପରେ ଦୁଃଖ ବା ମିଳନ ପରେ ବିରହରେ ଉଦାସୀନତା: –

ସୁଖଂ ହି ଦୁଃଖାନ୍ୟନୁଭୂୟ ଶୋଭତେ
ଯଥାନ୍ଧକାରାଦିବ ଦୀପଦର୍ଶନମ୍ ।
ସୁଖାତ୍ତୁ ଯୋ ଯାତି ଦଶାଂ ଦରିଦ୍ରତାଂ
ସ୍ଥିତଃ ଶରୀରେଣ ମୃତଃ ସ ଜୀବତି ॥

(ଚାରୁଦତ୍ତ – ମହାକବି ଭାସ)

ଦୂର କରିଥିବ ନବୀନା ମାଳିକା ମାଳିକା ମାଳିକା ମାଳିକା
ଦହିବ କଦନ, ମାଳିକା ମାଳିକା ମାଳିକା ନିଃସ୍ୱନେ ବାଳିକା
କୋକିଳ, ଦୂର କରେ ସେ ମୋ ଦୁଃଖକୁ
ଦୁଃଖଧ୍ୱଂସିନୀ ମୋ ମଣିବ ଅଳକ ଅଳକ ଅଳକ କ, ର, କୁ ॥୧୮॥

ଅନ୍ୱୟ—ରେ କୋକିଳ, ମୋ ନବୀନା ମାଳିକା (ମଲ୍ଲୀ) ମାଳିକା (ଫୁଲମାଳ) ମାଳିକା (କଣ୍ଠଭୂଷଣ) ଓ ମାଳିକା (ଗନ୍ଧମାଲ୍ୟ) ଦୂର କରିଥିବ ।

ସେ ବାଳାର କଦନ (ଶରୀର)କୁ ମାଳିକା (ନଦୀ ଏଠାରେ ଯମୁନା) ମାଳିକା (ମଦର ବିଶେଷ – ଏଠାରେ ପ୍ରୀଢ଼ମଦ) ଓ ମାଲିକା (ମାଳ୍ୟ—ତାକୁ ଦେଇଥିବା ମୋର ଫୁଲ ହାର) ଦହନ କରିବେ । ସେ ଦୁଃଖଧ୍ୱଂସିନୀ ମୋ ଦୁଃଖକୁ ଦୂର କରେ । ସେ କ (ମସ୍ତକ)ର ଅଳକ (ଉପାମେଘ) ଅଳକ (ଚୂର୍ଣ୍ଣକୁନ୍ତଳ) ଓ ଅଳକ (କୁଙ୍କୁମ)କୁ କୁ (ଖରାପ) ମନେ କରିବ ।

ଅର୍ଥ – ରେ କୋକିଳ, ମୋ ନବୀନା ମଲ୍ଲୀହାର, କର୍ଣ୍ଣଭୂଷଣ ଓ ଗନ୍ଧମାଲ୍ୟ ଚେଜିବଣି । ତାର ଶରୀରକୁ ଯମୁନା ନଦୀ, ପ୍ରୀଢ଼ମଦ ଓ ମୋର ପ୍ରଦତ୍ତ ମାଲ୍ୟ ଦହନ କରିବେ, କାରଣ ଏମାନଙ୍କୁ ଦେଖି ଓ ଚନ୍ଦ୍ରାକରି ମୋ କଥା ତାର ମନେ ପଡ଼ିବ । ସେ ଦୁଃଖନାଶିନୀ ମୋ ଦୁଃଖକୁ ଦୂର କରେ । ସେ ତାର ମସ୍ତକସ୍ଥିତ ମେଘବର୍ଣ୍ଣର କୃଷ୍ଣ ଚୂର୍ଣ୍ଣକୁନ୍ତଳକୁ ଓ କୁଙ୍କୁମ କୁ ମୋ ବିରହରେ କୁ ଅର୍ଥାତ୍ ଖରାପ ବା ଅପ୍ରିୟ ମନେ କରିବ ।

ବିରହିଣୀର ମାଳା ତ୍ୟାଗ: –

ପୀନୋତ୍ତୁଙ୍ଗସ୍ତନକଳଶଯୋସ୍ତାରହାରଂ ନ ଧତ୍ତେ
ହସ୍ତେନାପି ସ୍ପୃଶତି ସହସା ନୈବ କର୍ପୂରବାଟୀମ୍ ।
ମଞ୍ଚଂ ନାପି ଶ୍ରୟତି ଶଶିରୁ ହଂସତୁଲାସ୍ତରଢ଼୍ୟଂ
ତା ଦୁକ୍ ତନ୍ୱୀ ଗୁରୁଜନଭୟାଦ୍‌ଗୋପ୍ତୁକାମା ସ୍ୱତାପମ୍ ॥

(ସୁଭାଷିତରତ୍ନଭଣ୍ଡାଗାର)

ସ୍ତନବିନିହିତମପି ହାରମୁଦାରମ୍
ସା ମନୁତେ କୃଶତନୁରିବ ଭାରମ୍ ॥

(ଗୀତଗୋବିନ୍ଦ – ଜୟଦେବ)

ବିପାଣ୍ଡୁଭିର୍ମ୍ଲାନତୟା ପୟୋଧରେ –
ଷ୍ଟ୍ୟୁତା ଚିରାମ୍ଳାନିଶହେମଦାମଭିଃ ।
ଇୟଂ କଦମ୍ବାନିଲଭର୍ତୁରତ୍ୟୟେ
ନ ଦିଗ୍‌ବଧୂନାଂ କୃଶତା ନ ରାଜତେ ॥

(କିରାତାର୍ଜୁନୀୟ – ଭାରବି)

ନାୟୀ ଦୁଃଖହରଣକୋରଣୀ:—

ବଧୂମୁଖ-ବଧୂ ହାସ-ପୀୟୂଷ
ଗୃହି ଚନ୍ଦ୍ର-ଚକୋର ହେଲ ତୋଷ
ହୃଦ-କୁମୁଦ ପ୍ରମୋଦ ବଢ଼ିଲ
ଲଜ-ଅନ୍ଧାରେ ବପନ୍ତି ପଡ଼ିଲ ॥

(ପ୍ରେମସୁଧାନିଧି – ଉପେନ୍ଦ୍ର ଭଞ୍ଜ)

ଧୀରେ ଗୃହିଁ ନେଣେ କକୁଭ କକୁଭ କକୁଭ କକୁଭ କକୁଭ
ଧବଳ ସଦନ ଗହନ ଗହନ ଗହନ ପ୍ରାୟେ ଅସୁଲଭ
କୋକିଳ, ଧରିଥିବ ସତେ ଜୀବନ
ଧୀରେ ଗୃହିଁ ବାଳା ଗହନ ଗହନ ଗହନମୁଖୀ ତେଜ ଜ୍ଞାନ ॥୧୪॥

ଅନ୍ୱୟ – ହେ କୋକିଳ, ସେ ନୟନରେ କକୁଭ (ଦିଗ) କକୁଭ (ବୀଣାର ଲାଉତୁମ୍ବୀ) କକୁଭ (ବୀଣାର ଶେଷବକ୍ରଗ କାଷ୍ଠ) କକୁଭ (ବନମଲ୍ଲୀ) ଓ କକୁଭ (ପକ୍ଷୀ) ଦେଖିବ । ଦୁଃଖରେ ତାର ଧବଳସଦନ (କୋଠାଘର) ତାକୁ ଗହନ (ନିବଡ଼) ଗହନ (ଦୁର୍ଗମ) ଗହନ (ବନ) ପରି ଅସୁଲଭ (ଅମଙ୍ଗଳ ବା ଅସୁଖକର) ଲାଗିବ । ସତେ କଣ ସେ ଜୀବନ ଧରି ଥିବ । ସେ ଗହନ (ବନପ୍ରାନ୍ତ)କୁ ଦେଖି ଗହନ (ଗମ୍ଭୀର) ଓ ଗହନ (ଦୁଃଖରେ ଆବୃତ) ବଦନା ଜ୍ଞାନ ତେଜିଥିବ ।

ଅର୍ଥ – ରେ କୋକିଳ, ସେ ଦିଗମାନଙ୍କୁ ଗୃହିଁ (ନୈରାଶ୍ୟରେ) ବୀଣା ବଜାଇବାକୁ ଆଣି ବଜାଇ ନ ପାରି କେବଳ ବୀଣାର ଲାଉତୁମ୍ବୀ ଓ ଶେଷବକ୍ରଗକାଷ୍ଠକୁ ଗୃହିଁ ରହିବ (ଦୁଃଖରେ ଅଶ୍ରୁମୋଚନ) ବନମଲ୍ଲୀ ଓ ପକ୍ଷିଗଣ ତାକୁ ଦୁଃଖ ଦେବେ । ତାର କୋଠାଘର ତାକୁ ଦୁର୍ଗମ ନିବଡ଼ ବନ ପରି ଅସୁଖକର ହୋଇଥିବ । ସତେ କଣ ସେ ଜୀବନରେ ଥିବ ? ସେ ବନପ୍ରାନ୍ତକୁ ଗୃହିଁ (ମୋତେ ନ ପାଇ) ଗମ୍ଭୀର ଦୁଃଖରେ ବିରସବଦନା ବା ଅସନ୍ଧକେଶ ଆବୃତ ବଦନା ହୋଇ ଉତ୍କଣ୍ଠିତ ପ୍ରାଣରେ ବସିଥିବ ।

ବିରହିଣୀର ନୈରାଶ୍ୟ:—

ଝାର ତେଜ ପ୍ରିୟା କରତେ ନୟନୁଁ ଝାରସମନେ ଝାରବେ
କରେଛି ମୋ ପଥ କରୁଣ ହୋଇବ ନାଗରତନ ମୋ ଏବେ
କଣି ଉଦସ ବସି
କହୁଥିବ ବହୁ ମୃଦୁହାସୀ ॥

(ବିରହବାନ୍ଧବୀ—ଦରଦୀକବି)

ବିରହିଣୀର ବୀଣାବାଦନରେ ଅସମର୍ଥତା.—

ଉତ୍ସଙ୍ଗେ ବା ମଳିନବସନେ ସୌମ୍ୟ ! ନିକ୍ଷିପ୍ୟ ବୀଣାଂ
ମଦ୍‌ଗୋତ୍ରାଙ୍କଂ ବିରଚିତପଦଂ ଗେୟମୁଦ୍‌ଗାତୁକାମା ।
ତନ୍ତ୍ରୀମାର୍ଦ୍ରାଂ ନୟନସଲିଳୈଃ ସାରୟିତ୍ୱା କଥଞ୍ଚିଦ୍-
ଭୂୟୋ ଭୂୟଃ ପୁନରପି ପୁନଃ ମୂର୍ଚ୍ଛନାଂ ବିସ୍ମରନ୍ତୀ ॥

(ମେଘଦୂତ — କାଳିଦାସ)

ବୀଣାମଙ୍କେ କଥମପି ସଖୀପ୍ରାର୍ଥନାଭିର୍ବିଧାୟ
ସ୍ୱୈରଂ ରଥ୍ୟାଂ ସରସିଜଦୃଶା ଗାତୁମାରବ୍ଧମେବ ।
ତନ୍ତ୍ରୀବୃନ୍ଦ୍ୟା କିମପି ବିରହକ୍ଷୀଣଦୀନାଙ୍ଗବଲ୍ଲୀ—
ମେନାମେବ ସ୍ପୃଶତି ବହୁଶୋ ମୂର୍ଚ୍ଛନା ଚିତ୍ରମେତମ୍ ॥

(ପୁଷ୍ପୋଷିତରତ୍ନଖଣ୍ଡ ଗାର)

ବିରହିଣୀ ଗୃହକୁ ବନପରି ମଣେ:—

ଆବାସୋ ବିପିନାୟତେ ପ୍ରିୟସଖୀମାଳାପି ଜ୍ୱାଳାୟତେ
ତାପୋଽପି ଶ୍ୱସିତେନ ଦାବଦହନଜ୍ୱାଳାକଳାପାୟତେ ॥

(ଗୀତଗୋବିନ୍ଦ — ଜୟଦେବ)

ଘନକୃଷ୍ଣକେଶା ଘରମଶୁଥିବ ଗହନ କାନନ ପରି
ଘନସାର ଅପଘନେ ବୋଲି ଆହା ବସିଥିବ ମୋର ଗୋସ୍ତି
ଘୋଷି ଘୋଷି ମୋ ନାମ
ଘଟେ ଥିବ କି ଆଉ ତା ପ୍ରାଣ

(ବିରହବାନ୍ଧବୀ—ଦରଦୀକବି)

ଯଥା ଏଠାରେ ବିରହୋତ୍କଣ୍ଠିତା ନାୟିକା:—

ଉତ୍କା ଭବତି ସା ଯସ୍ୟାଃ
ସଙ୍କେତଂ ନାଗତଂ ପ୍ରିୟଃ ।
ତସ୍ୟାଽନାଗମନଂ ହେତୁଂ
ଚିନ୍ତୟାତ୍ୟାକୁଳା ଯଥା ॥

(ଶୃଙ୍ଗାରତିଳକ—କାଳିଦାସ)

ନୂତନ ସରଧ ସରଧ ସରଧ ସରଧ ପ୍ରାପ୍ତେ ଥିବ ହୋଇ
ନେତ୍ରଲୀଳା କଉଶିକ କଉଶିକ କଉଶିକ ଚିତ୍ର ଦିଶଇ
କୋକିଳ, ନବ ଅଙ୍ଗନା ସେ ରମଣୀ
ନୟନ କେସରୀ କେ, ସରି କେଶରୀକଟି ରସିକା ଶିରୋମଣି ॥୨୦॥

ଅନ୍ୱୟ—ରେ କୋକିଳ, ନୂତନ ସରଧ (ଚନ୍ଦ୍ର) ତାକୁ ସରଧ (ବଜ୍ର) ଓ ସରଧ (ପର୍ବତ) ସମାନ ସରଧ (ବାଧା) ହୋଇଥିବ । ତାର ନେତ୍ରଲୀଳା କଉଶିକ (ଶୃଙ୍ଗାର ରସ) କଉଶିକ (ସାପୁଆକେଳା) ଓ କଉଶିକ (ପେଚା)ର ଚିତ୍ର ଧାରଣ କରେ । ସେ ନବନାଗରୀ ରମଣୀ କେଶରୀ (ସିଂହ) କଟି ରସିକା ଶିରୋମଣିର ନୟନ କେସରୀ (ପଦ୍ମ) କୁ କେ (କିଏ) ସରି (ସମାନ ହେବ ।

ଅର୍ଥ—ରେ କୋକିଳ, ନୂତନ ଚନ୍ଦ୍ର ତାକୁ ବଜ୍ର ଓ ପର୍ବତ ସମାନ ଆଘାତ ଦେବ । ତାର ନେତ୍ରଲୀଳା ଶୃଙ୍ଗାରକାଳରେ ଏତେ ଚଞ୍ଚଳ ଯେ ତାହା ସାପୁଆକେଳା ଓ ପେଚାର ନୟନ ଚଞ୍ଚଳତାକୁ ନିନ୍ଦା କରେ । ସେ ନବବାଳା, ରସିକାଶ୍ରେଷ୍ଠା, ସିଂହମଧ୍ୟମାର ନୟନପଦ୍ମ ଅତୁଳନୀୟ ॥

କେଶରୀ ଶବ୍ଦର ଅନ୍ୟତ୍ର ପ୍ରୟୋଗ—

ବିକଶିତ ହୋଇଛନ୍ତି କେଶରୀ କେଶରୀ
ବିଳସେ ଶାଖାରେ ଦେଖ କେଶରୀ କେ ସରି ।
ବିଦାର କରନ୍ତି କରୀ-କେଶରୀ କେଶରୀ
ବିଷାନ ମାତ୍ରକ ଏଥି କେଶରୀ କେଶରୀ ॥

(ବୈଦେହୀଶବିଳାସ—ଉପେନ୍ଦ୍ର ଭଞ୍ଜ)

ପଦ୍ମନେତ୍ର କର ଘୂର୍ଣ୍ଣିଲେ କେଶରୀ କେଶରୀ ଭଜିବେ ମଧ୍ୟିକ
ପଡ଼ିବ ମୂର୍ଚ୍ଛାରେ ପତଙ୍ଗ ପତଙ୍ଗ ପତଙ୍ଗ ଦେଖିଲେ ସତ୍ଵିକ
କୋକିଲ, ପୀନସ୍ତନା ଏହା ସହିଲା
ପଦ ସ୍ୱର୍ଗ କରି ଲୋଡ଼ଣ ଆଲୋକ ଆଲୋକ ଆଲୋକ ହୋଇଲା ॥୨୧॥

· ଅନ୍ୱୟ – ରେ କୋକିଳ, ସେ ତାର ପଦ୍ମନୟନ ଟେକି (କଣେଇ) ଘୂର୍ଣ୍ଣିଲେ (ତା କଟାକ୍ଷ ବାଣରେ) କେଶରୀ (ସିଂହ) ଓ କେଶରୀ (ଗଜ) ମଧ୍ୟକୁ ଭଜିବେ । ପତଙ୍ଗ (ସୂର୍ଯ୍ୟ) ପତଙ୍ଗ (ଅଗ୍ନି) ଓ ପତଙ୍ଗ (ବାଣ) ଦେଖିଲେ ମୋ ସଜନୀ ମୂର୍ଚ୍ଛିତା ହେବ । ମୋ ପୀନସ୍ତନା ଏ ଦୁଃଖ ସହିଲା ? ମୋ ପଦକୁ ସ୍ୱର୍ଗ (ସୁଖ ଓ ମୁକ୍ତି ଧାମ) ମନେ କରି ମୋର ଆଲୋକ (ଦର୍ଶନ) ଲୋଡ଼ି କେବଳ ଆଲୋକ (ଦୃଷ୍ଟିପଥ) ଓ ଆଲୋକ (ସ୍ମୃତି) ମାତ୍ର ରହିଲା ।

ଅର୍ଥ—ରେ କୋକିଳ, ମୋ ରାଧା ତାର ପଦ୍ମନୟନରେ କଟାକ୍ଷ ହାଣି ଘୂର୍ଣ୍ଣିଲେ ତା କଟାକ୍ଷବାଣରେ ସିଂହ ଓ ଗଜ ପ୍ରଭୃତି ମଧ୍ୟରେ ଟଳି ପଡ଼ିବେ । ସେ ସୂର୍ଯ୍ୟ, ଅଗ୍ନି ଓ ବାଣ (କାମ ବାଣ) କୁ ସହିପାରିବ ନାହିଁ । ମୋ ପୀନସ୍ତନା ଏ ଦୁଃଖ ସହିଲା ! ମୋ ପଦକୁ ସୁଖ ଓ ମୁକ୍ତି ଧାମ ମାନେ କରି ସୁସଜ୍ଜିତା ହୋଇ ମୋର ଦର୍ଶନ ଇଚ୍ଛାକରି ଶେଷକୁ ମୋତେ ନ ପାଇ କେବଳ ମୋ ଆଗମନପଥକୁ ଅନାଇ ରହି ତାର ମନରେ ମୋର ସ୍ମୃତି ମାତ୍ର ରହିଲା ।

ଏଠାରେ ନାୟିକା ବ୍ୟାଧ ସହ ତୁଲନୀୟା:—

ଇୟଂ ବ୍ୟାଧାୟତେ ବାଲା
ଭ୍ରୂରସ୍ୟ କାର୍ମୁକାୟତେ
କଟାକ୍ଷାଶ୍ଚ ଶରାୟନ୍ତେ
ମନୋ ମେ ହରଣାୟତେ ॥

(ଶୃଙ୍ଗାରତିଲକ – କାଳିଦାସ)

ରାଧା ଏଠାରେ ବାସକସଜ୍ଜା ନାୟିକା: –

ସ୍ୱବାସକବଶାତ୍‌କାନ୍ତେ ସମେଷ୍ୟତି ଗୃହଂ ପ୍ରତି
ସଜ୍ଜୀକରୋତି ଚାତ୍ମାନଂ ଯା ସା ବାସକସଜ୍ଜିକା ॥

(ରସାର୍ଣ୍ଣବ ସୁଧାକର)

ଭବେଦ୍‌ବାସକସଜ୍ଜାସୌ ସଜ୍ଜିତାଙ୍ଗରତାଲୟା ॥

(ଶୃଙ୍ଗାର ତିଲକ – କାଳିଦାସ)

ସ୍ରକ୍‌ଚନ୍ଦନାମ୍ବରବିଭୂଷଣଭୂଷିତାଙ୍ଗୀ
ଯା ବଲ୍ଲଭାଗମନମାର୍ଗନିରୂଢଦୃଷ୍ଟିଃ ।
ତଲ୍ପଂ ଗତା ରୁଚିରେ ବାସଗୃହେଽବଶେତେ
ସା କୀର୍ତ୍ତିତା ଜଗତି ବାସକସଜ୍ଜିତେତି ॥

(ପଞ୍ଚସାୟକ – କବିଶେଖର ଜ୍ୟୋତିରୀଶ୍ୱର)

କୁରୁତେ ମଣ୍ଡନଂ ଯସ୍ୟାଃ ସଜ୍ଜିତେ ବାସବେଶ୍ମନି ।
ସା ତୁ ବାସକସଜ୍ଜା ସ୍ୟାଦ୍ ବିଦିତପ୍ରିୟସଙ୍ଗମା ॥

(ସାହିତ୍ୟଦର୍ପଣ—ବିଶ୍ୱନାଥ କବିରାଜ)

ରତିକ୍ରୀଡ଼ାକୁଞ୍ଜଂ କୁସୁମଶୟନୀୟୋଜ୍ଜ୍ୱଳରୁଚିଂ
ବପୁଃ ସାଲଂକାରଂ ନିଜମପି ବିଲୋକ୍ୟ ସ୍ମିତମୁଖୀ ।
ମୁହୁର୍ଧ୍ୟାୟଂ ଧ୍ୟାୟଂ କିମପି ହରିଣା ସଙ୍ଗମବିଧିଂ
ସମୃଦ୍ଧ୍ୟନ୍ତେ ରାଧା ମଦନମଦମାଦ୍ୟନ୍ମତିରଭୂତ୍ ॥

(ଉଜ୍ଜ୍ୱଳନୀଳମଣି – ରୂପଗୋସ୍ୱାମୀ)

କୁଦ୍‌କୁଟ କୁଟ ଗଟରେ ପଳାସ୍ଥିତ ଚିହ୍ନର ଅଭିସାରିକା
ଲଭିଲା ଧନ ଚନ୍ଦ୍ର ବର୍ତ୍ତି ଲୁଚିଇ ନିଶାନ୍ତରେ କରି ବକା
ସେ ଭଲେ, ତାରା ବାସକସଜ୍ଜା ଯୁଗଳେ
ପ୍ରସ୍ରବନ୍ତି ମ୍ଲାନ ଏକାବେଳେ । ଭଲ ଯେନାଯେନ ହୋଇଥିଲା ॥

(କୋଟିବ୍ରହ୍ମାଣ୍ଡସୁନ୍ଦରୀ – ଉପେନ୍ଦ୍ର ଭଞ୍ଜ)

ଆସିବେ ବୋଲି ନାଗର, ମଣ୍ଡିଥିଲି କେଳିପୁର,
କାଳି ବସିଲି ଜାଗର, ନିଶି ହୋଇ ଉଜାଗର,

ଶୋକଜଳେ ଦେଲେ ସେ ଭସାଇ
ରେ ପ୍ରିୟସହି !

(ଲାବଣ୍ୟବତୀ – ଉପେନ୍ଦ୍ରଭଞ୍ଜ)

ଅଶ୍ରୁ ପୂରିତ ବେନି ଡୋଳେ । କରିଣେ ରହିଲା କଷ୍ଟଲେ ॥
କୃଷ୍ଣ ଆଗମେ ମନ ଦେଇ । ଏକାନ୍ତ ଶୁଭ ପ୍ରକାଶଇ ॥

(ଶ୍ରୀମଦ୍ଭାଗବତ—ଜଗନ୍ନାଥ ଦାସ)

କାହିଁକି ନଇଲେ ମୋର କୁଞ୍ଜକୁ ଶ୍ୟାମ ନାଗର
କି ମନ୍ଦ କଲି ସେ କେଉଁ ଚତୁରୀ ରସିକାବର ।
ଜାଳି ରତ୍ନଦୀପାବଳୀ ଅତି ସୁଯତନ କରି
ମଣ୍ଡିଥିଲି କେଳିପୁର ସବୁ ହେଲା ଗ୍ଭରଖାର ॥

(ସଙ୍ଗୀତାବଳୀ—ବନମାଳୀ ଦାସ)

କେଉଁ ନାଗରୀମଣି କେଳି ସଦନ
ନିଜ ଅଙ୍ଗ ସୁବେଶ କରି ଯତନ ।
ବିଚିତ୍ର ତଳେ୍ପ ଜାତି କାଳିକା ଚୂର୍ଣି
ମୁକୁର ଦୃହିଁ ବେଶ ହୁଅଇ ପୂର୍ଣି ।
ପୁଂସ ଆଗତ ବିଳମ୍ବରେ ଭାବଇ
ଦ୍ୱାରକୁ ଯାଇ ପଥ ନିରେଖୁ ଥାଇ
ସଖୀ ଆଗତ ପାଦନ୍ୟାସ ଶୁଣିଲେ
ପ୍ରିୟ ମୋ ଆସିଲେ କି ମଣଇ ଭଲେ ।

(ରସମୁକ୍ତାବଳୀ—ଗଦାଧର ଭଞ୍ଜଦେବ)

ରଚିଛି ଏ ମଧୁଶଯ୍ୟା ଚିରବାଞ୍ଛିତ ଆହେ ବାଞ୍ଛିତ
ସାରା ଜୀବନର ଆଶା ଆକୁଳତା ସଯତନେ କରି ସଞ୍ଚିତ ।
ଏ ମଧୁ ଯାମିନୀ ହେବ କି ହେ ତବ
ମଧୁର ପରଶ ବଞ୍ଚିତ ॥

(ସଙ୍ଗୀତାବଳୀ – କାନ୍ତକବି ଲକ୍ଷ୍ମୀକାନ୍ତ)

ମୋହ ରଣରେ ସହି ! କରି ମୋତେ ପରହାଣ
ଦଗା ଦେଇ ସେ ନାଗର ନେଲେ ମୋ ପରାଣ ।

ସ୍ମରବାର ଶବଗନ୍ଧ ହୃଜ, ଦଂଶେ ସ୍ମର ଦୂନେ ସଖି ସଜ,
ସ୍ମର ଚର ମୋ ମରଣ ଆଜ,ସ୍ମରଚନ୍ଦ୍ର ଯୋଗ କରଅଛୁ ମୁଁ ଟାଣରେ ॥
(ଗୀତଗଣିତ—ଦରଦୀକବି)

[ଅର୍ଥ—ସ୍ମରବର—ବୁଧ—ସ୍ୱବ=ବୁଦ୍ଧି, ସ୍ମର ଦନେ ଆଠ ସଖି = ବସ୍ତ୍ର, ସ୍ମର ଚର ବାର—ଯୋଗ=ଧ୍ରୁବ, ସ୍ମର ଚନ୍ଦ୍ର ଷୋହଳ—ଯୋଗ = ସିଦ୍ଧି ବା ସିଦ୍ଧ ।

ରେ ସଖି ! ସେ ନାଗର ଦଗା ଦେଇ ମୋ ପ୍ରାଣ ନେଲେ । ତୋତେ ସ୍ମରଣ, ତୁ ମୋତେ ରକ୍ଷାକର । ମୋର ବୁଦ୍ଧି ଲୋପ ପାଇଲାଣି, ମୋତେ ବସ୍ତ୍ର ସବୁ ଡାମ୍ବୁକ୍ତ ପରି ଲାଗୁଛି । ମୋର ମୃତ୍ୟୁ ନିଶ୍ଚିତ—ଏହା ମୁଁ ସିଦ୍ଧ କରୁଛି । ]

ତଲଫେ ବିନ ବାଲମ ମୋର ଜିୟା
ଦିନ ନାହିଁ ଚୈନ ରାତ ନାହିଁ ନିଂଦିୟା
ତଲଫ ତଲଫ କେ ଭୋର କିୟା ।
ତନ ମନ ମୋର ରହଁଟ ଅସ ଡୋଲେ
ସୂନ ସେଜ ପର ଜନମ ଛିୟା
ନୈନ ଥକିତ ଭୟେ ପନ୍ଥ ନ ସୁଝେ
ସାଇଁ ବେଦରଦୀ ସୁଧ ନ ଲିୟା ॥
(ଦୋହାବଳୀ – କବୀର ଦାସ)

ଆଲୀରୀ, ମେରେ ନୈନନ ବାଣ ପଡ଼ୀ ।
ଚିତ୍ତ ଚଢ଼ୀ ମେରେ ମାଧୁରୀ ମୂରତ ଉର ବୀଚ ଆନ ଅଡ଼ୀ ॥
କବକୀ ଠାଢ଼ୀ ପଂଥ ନିହାରୁଁ ଅପନେ ଭବନ ଖଡ଼ୀ ।
କୈସେ ପ୍ରାଣ ପିୟା ବିନ ରାଖୁଁ ଜୀବନ ମୂର ଜଡ଼ୀ
(ଦୋହାବଳୀ – ମୀରା ବାଈ)

ମଧୁର ମଧୁର ମେରେ ଦୀପକ ଜଲ
ଯୁଗ ଯୁଗ ପ୍ରତିଦିନ ପ୍ରତିକ୍ଷଣ ପ୍ରତିପଲ
ପ୍ରିୟତମ କା ପଥ ଆଲୋକିତ କର ॥
ପ୍ରତୀକ୍ଷା – ମହାଦେବୀ ବର୍ମା)

ସାଗ୍ର ଜଣି ଧର ଭାସ୍ୱ ଭାସ୍ୱ
ଅନନ୍ତମେଘ କ୍ଷେଟ୍ଟେ ମୋରବେ ଦାଣ୍ଡାସ୍ୱ
ପଲ୍ଲବଦଲେ ଶ୍ରାବଣ-ଧାସ୍ୱ
ତୋମାର ବରଷ ବାଜେ ହେ ॥
(ଗୀତାଞ୍ଜଳି—ରବୀନ୍ଦ୍ରନାଥ ଠାକୁର)

ପ୍ରିୟଆଗମନ ଆଶା ହିଁ ବିରହିଣୀର ଏକମାତ୍ର ପନ୍ଥାଃ—

ଆଶାବନ୍ଧଃ କୁସୁମସଦୃଶଂ ପ୍ରାୟଶୋହ୍ୟଙ୍ଗନାନାଂ
ସଦ୍ୟଃ ପାତି ପ୍ରଣୟି ହୃଦୟଂ ବିପ୍ରୟୋଗେ ରୁଣଦ୍ଧି ॥
(ମେଘଦୂତ—କାଳିଦାସ)

ସୁଚନ୍ଦ୍ରହାସୀ ହେବ ବାଳୀକ ବାଳୀକ ବାଳୀକ ରତ ମୋର ଗୁଣି
ଫେଲୁଛି ନ ବୃଦ୍ଧି କାଳିକା କାଳିକା କାଳିକା ପରା ଏକ ମଣି
କୋକିଳ, ଫୁରୁଣା ଗୁଡ଼ିଥିବ ପ୍ରାଣ,
ଫୁଲମୁଣ୍ଡକେଶୀ କେକୀନୀ କଳାପ କଳାପ କଳାପ ଦେଖିଣ ॥୨୨॥

ଅନ୍ୱୟ—ରେ କୋକିଳ, ସେ ସୁଚନ୍ଦ୍ରହାସୀ ବାଳୀକ (କନ୍ୟା) ମୋର ରତ ଚନ୍ଦ୍ରାକର ବାଳୀକ (ବାଳା ବା ବାତୁଳ) ଓ ବାଳୀକ (ବୟଃସନ୍ଧିକାଳର ରତ) ମନେ ପକାଇ ଫେଲୁଛି (କିପରି ହେଲେ) କାଳିକା (କଳାମେଘ) କାଳିକା (ପାର୍ବତୀ) ଓ କାଳିକା (ଗ୍ରୀବାରୁ ନାଭି ଯାଏ ଲମ୍ବିଥିବା ରୋମାବଳୀ) ମାନଙ୍କୁ ବୃଦ୍ଧି ନ ଥିବ । ସେ ଫୁଲମୁଣ୍ଡ (ଭ୍ରମର) କେଶୀ କେକୀନୀ (ମୟୂରୀ) ର କଳାପ (ପୁଚ୍ଛ) କଳାପ (ଚନ୍ଦ୍ର) ଓ କଳାପ (ଧନୁ) କୁ ଦେଖି ପ୍ରାଣ ଗୁଡ଼ିଥିବ ॥

ଅର୍ଥ—ରେ କୋକିଳ, ସେ ସୁହାସିନୀ କନ୍ୟା ବୟଃସନ୍ଧି କାଳର ରତ ପ୍ରସ୍ତାବକୁ ମନେ ପକାଇ ବାତୁଳ ପ୍ରାୟ ହୋଇଥିବ । ସେ କିପରି ହେଲେ ମେଘକୁ (କୃଷ୍ଣବର୍ଣ୍ଣ ହେତୁ) ପାର୍ବତୀଙ୍କୁ (ତାର ବିରହ ବେଦନା ଉପଶମ ଲାଗି ପୂଜାର ଇଷ୍ଟଦେବତା ଯୋଗୁଁ) ଓ ଗ୍ରୀବାରୁ ନାଭିଯାଏ ଲମ୍ବି

ଥିବା ରୋମାବଳୀକୁ (କୃଷ୍ଣସର୍ପ ଭୟରେ ବା କନ୍ଦର୍ପର ଧନୁ ଭୟରେ) ସ୍ପୃଷ୍ଟ ନ ଥିବ । ସେ ଭ୍ରମରକେଶା ମୟୂର ପୁଚ୍ଛକୁ (ମୋର ଶିର ଭୂଷଣ) ଚନ୍ଦ୍ରଙ୍କୁ (ବିରହରେ ଚନ୍ଦ୍ର ଦୁଃଖଦାୟୀ) ଓ ଧନୁକୁ (ଏଠାରେ ପୁଷ୍ପଧନୁ) ଦେଖି ପ୍ରାଣ ଗ୍ଲାନିଥିବ ।

ବିରହିଣୀ ରାଧାର ବାଗ୍ଲତା:—

କ୍ୱ ନନ୍ଦକୁଳଚନ୍ଦ୍ରମାଃ କ୍ୱ ଶିଖିଚନ୍ଦ୍ରକାଲଂକୃତିଃ
କ୍ୱ ମନ୍ଦ୍ରମୁରଲୀରବଃ କ୍ୱ ନୁ ସୁରେନ୍ଦ୍ରନୀଳଦ୍ୟୁତିଃ ।
କ୍ୱ ରାସରସତାଣ୍ଡବୀ କ୍ୱ ସଖି ଜୀବରକ୍ଷୌଷଧି—
ର୍ନିଧିର୍ମମ ସୁହୃତ୍ତମଃ କ୍ୱ ବତ ହନ୍ତ ହା ଧିଗ୍ବିଧିଃ ॥

(ଲଳିତମାଧବ – ରୂପଗୋସ୍ୱାମୀ)

ବିଳପତି ହସତି ବିଷୀଦତି ରୋଦିତି ଚଞ୍ଚତି ମୁଞ୍ଚତି ତାପମ୍ ॥

(ଗୀତଗୋବିନ୍ଦ – ଜୟଦେବ)

କାଳିକା ଶବ୍ଦର ଅର୍ଥ: —

କାଳିକା ବୋଲାଇ ମେଘ ସମୂହକୁ କାଳିକା ଚଣ୍ଡିକା ପୁଣ ॥

(ଗୀତାଭିଧାନ – ଉପେନ୍ଦ୍ର ଭଞ୍ଜ)

ରମଣୀର ଆବକ୍ଷନାଭିଲମ୍ବିତ ରୋମାବଳୀ ମର୍କତ ଧନୁ ପର: —

ଅବଳା ବୋଲି ଯେ ବାଳାକୁ କହି
ଅଦୃଷ୍ଟ ଅଶ୍ରୁତ ବଳ ଦେଖାଇ
ବଳି କରି ଉନ୍ନ ବଳି ଏଥିକି
ମର୍କତ-ଧନୁ କେ ବେନି ପୁଷ୍ପିକି
କଟେଷ୍ଟ ଧରିଅଛୁ ଟେକି ଯେ
ଜଘନ ଭଦ୍ରାସନ          ଯେନି ହେଲି ଜି
ବଳବନ୍ତେ ଅଭିଷେକୀ ଯେ ॥

(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ—ଉପେନ୍ଦ୍ର ଭଞ୍ଜ)

ସ୍ତନ ଉନ୍ନତ ଚକ୍ରବାଳ ସୀମାବ୍ଧ ନେତ୍ର କମଳ ନ ଗଳିଲା
ତରୁଣ-ଅରୁଣ-ଚରଣ ଯୁଗଳ ଆଲୋକର ଯୋଗ ନୋହିଲା

ସେମାଳୀ, ଭଜନବ୍ରତ-କଣ୍ଠ-ଶିକଳୀ
ନ ଜାଳୀ କୁଣ୍ଡଳୀ ନାଭିବଳେ ପଶେ ଘନପେଙ୍କିଜାଳୁ ନିକଳି ॥
(ବିଦଗ୍ଧ ଚିନ୍ତାମଣି—ଅଭିମନ୍ୟୁ)

କେକପୁଚ୍ଛ ସନ୍ଦର୍ଶନରେ ଶ୍ରୀକୃଷ୍ଣଙ୍କ ସ୍ମୃତିଃ—

ଚନ୍ଦ୍ରକଚାରୁମୟୂରଶିଖଣ୍ଡକମଣ୍ଡଳବଳୟିତକେଶମ୍
ପ୍ରଚୁରପୁରନ୍ଦରଧନୁରନୁରଞ୍ଜିତମେଦୁରମୁଦିରସୁବେଶମ୍ ॥
(ଗୀତଗୋବିନ୍ଦ—ଜୟଦେବ)

କଳାପୀ ବରହୀ ଚୂଳ    ଭ୍ରମ କରଇ କୁନ୍ତଳ
ଚନ୍ଦ୍ରେ ରଖିଅଛୁ କି ସେ ସ୍ୱନ୍ତ କୋରକ
କମଳାକ୍ଷ ଅପଘନ    ଘନରସେ ପୁନଃପୁନଃ
ନିବେଶିତ ଅବିରତ ଚିତ୍ତବୃତ୍ତକ
କର୍ଣ୍ଣେ ବେଣୁ ନାଦ ଦତ୍ତକ
କନ୍ଦଳ ଘଣ୍ଟି ନାଦରେ ବୀଣା ଗୁଞ୍ଜନ ॥
(କଳାକଉତୁକ—ଉପେନ୍ଦ୍ର ଭଞ୍ଜ)

ଭୁଜଙ୍ଗକଳା ତ ହେଲା ପ୍ରତ୍ୟକ୍ଷ
ଭୂଷା ରୁଞ୍ଜ ଗୁଞ୍ଜ କେକୀ ପୁଚ୍ଛ
ଭୁଲବ କେ ଅବା    ଏମନ୍ତ ଶୋଭାକୁ
ଆମ୍ଭବନ୍ତୁ ଚଢ଼େ ଭାବ ସ୍ୱଚ୍ଛରେ ଭାବଦ !
(ବ୍ରଜଭୂଷଣ—ଉପେନ୍ଦ୍ର ଭଞ୍ଜ)

ନାଦଃ କୋଽପି ନିତମ୍ବିନୀଜନମନଃକ୍ଷୋଭକ୍ଷମଃ ଶ୍ରୂୟତେ
କାନ୍ତିଃ କାପି ଚଳତ୍ କଳାପମୁକୁଟାଲମ୍ବୀ ଚ ଚମ୍ପାୟତେ ।
ସୌରଭ୍ୟଂ ତତ୍ ପ୍ରଭୃତି ସ୍ଥଳତ୍ୟପି ବଳତ୍ୟନ୍ତର୍ବିଲପୋ ଦଳା—
ଦଗ୍ଧାନ୍ତଂ ସଖି ଦୃଶ୍ୟତେ କିମଭିତୋ ମାହେନ୍ଦ୍ରଜାଲଂ ମହଃ ॥
(କିଶୋରଚନ୍ଦ୍ରାନନ ଚମ୍ପୂ—କବିସୂର୍ଯ୍ୟ ବଳଦେବ ରଥ)

ଶିରେ ଭୁଜଙ୍ଗ ଭୁଜ ପୁଚ୍ଛ ଶୋଭୁଛି
ନିନ୍ଦଇ ଇନ୍ଦ୍ର ଶରାସନ

ଅଲକାପନ୍ତି ଡାଳଅଳି ଗଞ୍ଜଇ
ଦେଖି କେ ନୋହିବ ଉଚ୍ଛନ୍ନ
ଭ୍ରୂଲତା, କି ଅବା ମଦନକୋଦଣ୍ଡ
ଅଞ୍ଜନଲତାଙ୍କୁ ଘ୍ନଣ କରଅଛୁ
କଞ୍ଜନୟନ ପଞ୍ଚକାଣ୍ଡ ॥
(ମଥୁରାମଙ୍ଗଳ—ଭକ୍ତଚରଣ)

ସେ ଗୋ ବନରୁ ଆସୁଥାଇ ଗ୍ୱାଳ
ଶିରେ ବରହିପୁଚ୍ଛ ଶୋହା ଝାଳ ॥
(ଗୋପୀଭାଷା—ଦନାଇ ଦାସ)

ଶ୍ୱେତ ମୁକ୍ତମାଳେ ରକ୍ତମାୟ ବକ୍ଷସ୍ଥଳ
ଶିଖି ଶିଖଣ୍ଡକ ଚୂଳେ ଗୁଞ୍ଜ ମୁଣ୍ଡମାଳ ॥
(ଶ୍ୟାମରାସୋତ୍ସବ – ବ୍ରଜନାଥ ବଡ଼ଜେନା)

ମୋର ମୁକୁଟ ମକରାକୃତକୁଣ୍ଡଲ ଅରୁନ ତିଲକ ଦୟେ ଭାଲ
ଅଧର ସୁଧାରସ ମୁରଲୀ ରାଜତ ଉର ବୈଜନ୍ତୀ ମାଲ –
ବସୋ ମେରେ ନୈନନମେଁ ନନ୍ଦଲାଲ ।
(ମୀରାବାଈ ଦୋହାବଲୀ)

ବାଟରେ ହେବ କି ତା ଲକ୍ଷଣ ଲକ୍ଷଣ ଲକ୍ଷଣ କାମ ଜିଣିବାକୁ
ବଦନ ତ ରାମ ଲକ୍ଷଣ ଲକ୍ଷଣ ଲକ୍ଷଣ ମୋ କାମ ଜ୍ୱରକୁ
କୋକିଳ, ବାଳା କୋମଳା ରସିକାମୀ
ବସି ଗୃହୁଁ ଥିବ ପଦ୍ମିନୀ ପଦ୍ମିନୀ ପଦ୍ମିନୀ-ଗାମିନୀ ମୋ ଧନୀ ।୨୩।

ଅର୍ଥ – ରେ କୋକିଳ, ତାର ଲକ୍ଷଣ (ନାମ) ଲକ୍ଷଣ (ସ୍ୱରୂପ) ଓ ଲକ୍ଷଣ (ଦର୍ଶନ) ସଙ୍ଗେ କଣ କାମ (କନ୍ଦର୍ପ)କୁ ଜିଣିବାକୁ ହେବ ? ତାର ବଦନ ରାମ (ରମଣୀୟ) ଲକ୍ଷଣ (ପରିଚୟ) ଲକ୍ଷଣ (ଚନ୍ଦ୍ର) ଲକ୍ଷଣ (ପ୍ରକୃତସିଦ୍ଧ ଔଷଧ) ଅଟେ । ମୋ ରସିକା କୋମଳାଙ୍ଗୀ ପଦ୍ମିନୀ (ହସ୍ତିନୀ) ଗମନୀ ଧନୀ ଏକାନ୍ତରେ ବସି ପଦ୍ମିନୀ (ପୁଷ୍କରଣୀ)ର ପଦ୍ମିନୀ (ପଦ୍ମ)କୁ ଚାହୁଁ ଥିବ ।

ଅର୍ଥ—ରେ କୋକିଳ, ତାର ନାମର ମାଧୁର୍ଯ୍ୟ, ରୂପର ସୌନ୍ଦର୍ଯ୍ୟ ଓ ଦର୍ଶନର ଜ୍ୟୋତି ଆହ୍ଲାଦ କରି କନ୍ଦର୍ପଙ୍କୁ ଜିଣିବାକୁ ହେବ ଅର୍ଥାତ୍ ତା ଯୋଗୁଁ ମୁଁ କନ୍ଦର୍ପଙ୍କୁ ଜୟ କରେ । ତାର ମନୋହର ବଦନ ପଣତଯ ଓ ସୁଲକ୍ଷଣ ମୋ କାମଜ୍ୱରକୁ ପ୍ରକୃତିସିଦ୍ଧ ଔଷଧ ଅଟେ । ମୋ କୋମଳାଙ୍ଗୀ ରସିକା ଗଜଗମନା ନନ୍ଦନରେ ବସି ପୁଷ୍କରିଣୀର ପଦ୍ମଫୁଲକୁ ଦେଖୁଥିବ ।

କନ୍ଦର୍ପଙ୍କୁ ଜୟ କରିବା ଲାଗି ନାରୀ ପ୍ରଧାନ ସହାୟ:—

ବାହୂ ଦ୍ୱୌ ଚ ମୃଣାଲମାସ୍ୟକମଳଂ ଲାବଣ୍ୟଲୀଳାଜଳଂ
ଶ୍ରୋଣୀ ତୀର୍ଥଶିଳା ଚ ନେତ୍ରଶଫରଂ ଧମ୍ମିଲ୍ଲଶୈବାଳକମ୍ ।
କାନ୍ତାୟାଃ ସ୍ତନଚକ୍ରବାକଯୁଗଳଂ କନ୍ଦର୍ପବାଣାନଲୈ—
ର୍ଦଗ୍ଧାନାମବଗାହନାୟ ବିଧିନା ରମ୍ୟଂ ସରୋ ନିର୍ମିତମ୍ ॥

(ଶୃଙ୍ଗାର ତିଳକ—କାଳିଦାସ)

ଅପୂର୍ବୋ ଦୃଶ୍ୟତେ ବହ୍ନିଃ କାମିନ୍ୟାସ୍ତନମଣ୍ଡଳେ ।
ଦୂରତୋ ଦହତେ ଗାତ୍ରଂ ହୃଦି ଲଗ୍ନସ୍ତୁ ଶୀତଳମ୍ ॥

(ଶୃଙ୍ଗାର ତିଳକ – କାଳିଦାସ)

ପ୍ରିୟ ପରିହର ରେଭସବଳିତମିବପୁଲକିତମତିଦୁରବାପମ୍
ମଦୁରସି କୁଚକଳଶଂ ବିନିବେଶୟ ଶୋଷୟ ମନସିଜତାପମ୍ ।
ଅଧରସୁଧାରସମୁପନୟ ଭାମିନି । ଜୀବୟ ମୃତମିବଦାସମ୍
ତ୍ୱୟି ବିନିହିତମନସଂ ବିରହାନଳଦଗ୍ଧବପୁଷମବିଳାସମ୍ ॥

(ଗୀତଗୋବିନ୍ଦ – ଜୟଦେବ)

ବଦସି ଯଦି କିଞ୍ଚିଦପି ଦନ୍ତରୁଚିକୌମୁଦୀ
ହରତି ଦରତିମିରମତିଘୋରମ୍
ସ୍ଫୁରଦଧରଶୀଧବେ ତବ ବଦନଚନ୍ଦ୍ରମା
ରୋଚୟତି ଲୋଚନଚକୋରମ୍ ॥

(ଗୀତଗୋବିନ୍ଦ—ଜୟଦେବ)

କି ବଡ଼ ଇନ୍ଦ୍ରସମ୍ପତ୍ତି          କି ବଡ଼ ହେବା ନୃପତି
ସବୁ ସୁଖ ଉତପତ୍ତି ସ୍ଥାନ ଦମ୍ପତି

ପାଣ୍ଡବେ ଯେସନ ଦ୍ରୁପଦୀ          ସୀତା ଯେସନ ରଘୁପତି
ମାନ ନ ଥିଲେ ବିପତ୍ତି ହେଲା ପ୍ରାପତି
ନାଶଇ ବିରହ ଚପତି
ମାର ଶରକୁ ସେ ବାଳା ବଜ୍ରରୂପତି ॥
(ପ୍ରେମସୁଧାନିଧି—ଉପେନ୍ଦ୍ର ଭଞ୍ଜ)

କେଉଁ ଗୋପୀକି ଅନାଇଣ ବୋଲନ୍ତି ତୋ ଅଙ୍ଗ କାମ ସରୋବର
କାନ୍ତି ସ୍ୱଚ୍ଛଜଳ କେଶ ଶଇବାଳ ବଦନ କମଳ ପ୍ରକାର
କମଳା, ନୟନଯୁଗଳ ଶଫରୀ
କୁଚ ଚକ୍ରବାଳ ନଖକହ୍ଲାରକ ସକଳ ଜନମନୋହାରୀ ॥
(ରସକଲ୍ଲୋଳ—ଦୀନକୃଷ୍ଣ)

ଅତନୁ ସନ୍ତତକୁ ରୁ ମୋ ତରଣୀ
ଅନୁରୂପ ଏ ବାଣୀ ନୁହଇ ପୁଣି ॥
(ଅମ୍ବିକାବିଳାସ – ବଳଭଦ୍ର ଭଞ୍ଜଦେବ)

କାମନା ମନା କରି          ବିରସ ରସ ଧରି
ନ କରୁ କରୁଣା ଝରତେ
ମୁଁ ମାର ମାରଣାରେ          ସୁକ୍ଷୀ ହୃଦ୍ଦିଲରେ
ସେବାରେ ବାରେ ରଖ ମୋତେ,
ରେ ଜୀବବନ୍ଧୁ !
ବିପଦ ପଦକରେ ପାର
କଣ୍ଠତେ ତଣ୍ଡେ ଖବ ଧର
ହାସ ରସର ସୁଧା          ପ୍ରସରୁ ସରୁ ମଧ୍ୟା
ଭରସା ରସାଳସା କର ॥
(ରାଧାମାଧବବିଳାସ – ରଘୁନାଥ ପରିଚ୍ଛା)

ପ୍ରିୟାର ଅଙ୍ଗସଙ୍ଗ ଲଗି ବିରହୀର ଚିନ୍ତା:—

କଦା କାନ୍ତାଗାରେ ପରିମଳ-ମିଳନ୍ତ-ପୁଷ୍ପ-ଶୟନେ
ଶୟାନଃ କାନ୍ତାୟାଃ କୁଚକଳସଯୁଗ୍ମଂ ହୃଦି ବହନ୍ ।

ଅୟେ କାନ୍ତେ ! ମୁଗ୍ଧେ ! କୁଟିଳନୟନେ ! ଚନ୍ଦ୍ରବଦନେ !
ପ୍ରସୀଦେତ କ୍ଷୋଣନ୍ ନମିଷମିବ ନେଷ୍ୟାମି ରଜନୀମ୍ ।।
(ଶୃଙ୍ଗାରରସାଷ୍ଟକ – କାଳିଦାସ)

ପ୍ରୀତ ଉଣାକରୁ ପଛେ ସୁମତ
ତାରେ ନ ଝୁରିବ କାହିଁ ମୋ ଗତ ।।
(ରସିକ ହାରାବଳୀ—ଉପେନ୍ଦ୍ର ଭଞ୍ଜ)

ରସି ରସାଇ ଉରୁ ପରେ ବସାଇ ଖିରୁ
ଖିଆଇଂ କମେ ନୀବ ଫେଇବ କ
ରତ ଉତ୍ସବେ ମ ତ ଦନ୍ତେ କରିବ ଘାତ
ଘନେ କରଜ ଚନ୍ଦ୍ର ଥୋଇବ କ
ରତୀବନସ୍ଥାନକ ପାଇବ କ ।।
(ରସପଞ୍ଚକ – ଉପେନ୍ଦ୍ର ଭଞ୍ଜ)

ସଙ୍ଗିନୀରେ କାହାକୁ ମୁଁ କୋଳେ ବସାଇବି
ସୁମନଚମ୍ପ ଚମ୍ପନ କା ପାଇଁ କରିବି
ସୁଧା ଗୃହଧାମରେ ବସି
ସୁଧାକର କରେ ପ୍ରିୟେ । କେ ଭାସିବ ହସି ।।
(ସତୀଚନ୍ଦ୍ରିକା—ମାଧବଚନ୍ଦ୍ର ମିଶ୍ର)

କିନ୍ତୁ କାଳିଦାସଙ୍କ ସମସାମୟିକ କବିମାନଙ୍କର ଅନ୍ୟ ଚିନ୍ତା: –
କଦା ବାରଣସ୍ୟାମମରତଟିନୀ ରୋଧସି ବସନ୍
ବସାନଃ କୌପୀନଂ ଶିରସି ନଦଧାନୋଽଞ୍ଜଳିପୁଟମ୍ ।
ଅୟେ ଗୌରୀନାଥ ! ତ୍ରିପୁରହର ! ଶମ୍ଭୋ ! ତ୍ରିନୟନ !
ପ୍ରସୀଦେତ୍ୟାକ୍ରୋଶନ୍ନିମିଷମିବ ନେଷ୍ୟାମି ଦିବସାନ୍ ।
କଦା ବା ସାକେତେ ବିମଳସରୟୂତୀରପୁଳିନେ
ଚରନ୍ତଂ ଶ୍ରୀରାମଂ ଜନକତନୟା ଲକ୍ଷ୍ମଣଯୁତମ୍ ।
ଅୟେ ରାମ ! ସ୍ୱାମିନ୍ ! ଜନକତନୟାବଲ୍ଲଭ ! ବିଭୋ !
ପ୍ରସୀଦେତ୍ୟାକ୍ରୋଶନ୍ନିମିଷମିବ ନେଷ୍ୟାମି ଦିବସାନ୍ ।।
(ସୁଭାଷିତରତ୍ନଭଣ୍ଡାଗାର)

କଦା ବୃନ୍ଦାରଣ୍ୟେ ବିମଳଯମୁନା ତୀର ପୁଳିନେ
ଚରନ୍ତଂ ଗୋବିନ୍ଦଂ ହଲଧରସୁଦାମାଦିସହିତମ୍ ।
ଅୟେ କୃଷ୍ଣ ! ସ୍ୱାମିନ୍ ! ମଧୁର ମୁରଲୀବାଦନ ବିଭୋ !
ପ୍ରସୀଦେତ୍ୟାକ୍ରୋଶନ୍ନିମିଷମିବ ନେଷ୍ୟାମି ଦିବସାନ୍ ॥
(ସୁଭାଷିତ ରତ୍ନ ଭାଣ୍ଡାଗାର)

ରମଣୀର ସଙ୍ଗଲାଭ ହିଁ କାମଜ୍ୱରର ପ୍ରକୃଷ୍ଟତମ ଔଷଧ:—

କ୍ୱ ଭ୍ରାତଶ୍ଚଲିତୋଽସି ବୈଦ୍ୟକଗୃହେ କିନ୍ତତ୍ର ଶାନ୍ତ୍ୟୈ ରୁଜାମ୍
କିଂ ତେ ନାସ୍ତି ସଖେ ! ଗୃହେ ପ୍ରିୟତମା ସର୍ବାନ୍ ଗଦାନ୍ ହନ୍ତି ଯା ।
ବାତସ୍ତେନ କୁଚକୁମ୍ଭମର୍ଦ୍ଦନବଶାତ୍ ପିତ୍ତଂ ଚ ବକ୍ତ୍ରାମୃତାତ୍
ଶ୍ଳେଷ୍ମାଣଂ ବିନିହନ୍ତି ହନ୍ତ ! ସୁରତବ୍ୟାପାରଖେଳଶ୍ରମାତ୍ ॥
( ଶୃଙ୍ଗାର ତିଳକ – କାଳିଦାସ)

ଦୃଷ୍ଟିଂ ଦେହି ପୁନର୍ବାଲେ ! କମଳାୟତ-ଲୋଚନେ
ଶ୍ରୂୟତେ ହି ପୁରା ଲୋକେ ବିଷସ୍ୟ ବିଷମୌଷଧମ୍ ॥
( ଶୃଙ୍ଗାର ତିଳକ— କାଳିଦାସ )

ବଳତ୍ରୟାବଦ୍ଧ-ସୁସୂକ୍ଷ୍ମମଧ୍ୟେ !
ବିଷୋପହାର୍ଯ୍ୟୌଷଧି ମନ୍ତ୍ର ରୂପେ !
ମନୋଜବାଣୌଘ-ବିଷାକ୍ତଗାତ୍ର-
ମନୁଗ୍ରହଂ ମାଂ କୁରୁ ସମ୍ପ୍ରତି ତ୍ୱମ୍ ॥
(ଚୌର ପଞ୍ଚାଶିକା – ବିଲ୍ହଣ)

ତ୍ରିବଳୀରେ ମଧ୍ୟ ଦେଶ ଶୋଭନ
ଉପମା ନାହିଁ ତା ତିନି ଭୁବନ
କନ୍ଦର୍ପ ବିଷ-ଔଷଧି – ରୂପିଣୀ !
ତୁ ପୁଣି ଅଦ୍ଭୁତ ସ୍ମର ବାରେଣୀ
ଅନୁଗ୍ରହ କର
ମାର ଶର ବିପ୍ଳୁ ଉଦ୍ଧର ଧର ॥

(ଇଚ୍ଛାବତୀ –ଧନଞ୍ଜୟ ଭଞ୍ଜ)

ମମ ଅମର କର ନବପଲ୍ଲବ ଅଧରର ରସ ଅଶନ
ଛଇଲଗଣର ବଡ଼ ଅଯଶ ଏ ସମସ୍ତ କରଇ ଏପନ
ଜଳଦ ! ଗଦବତ ସୁର ଗରଳ
ଶମନ ଭବନ ଗମନ ଉତ୍ସବ ଉତ୍ସବ ଇଛଇ ଏମନ ଚପଳ ॥
(ଅବନା ରସ ତରଙ୍ଗ — ଉପେନ୍ଦ୍ର ଭଞ୍ଜ)

ଔଷଧି କେବଳ ବାଳା ମୋ ବିରହ ବ୍ୟାଧି କି
ଔଷଧୀଶ ଆଦରଶ ତାମରସ ମୁଖୀ ପାଶ
ଗ୍ରହିଲି ମୁଁ ଯା ଚୁମ୍ବିଲି ତୁଣ୍ଡିଲି କି ଭୃଙ୍ଗି କି ॥
(ଚୌପଦୀଚନ୍ଦ୍ର — ଉପେନ୍ଦ୍ର ଭଞ୍ଜ)

ପୁରୁଷ ତନ୍ତ୍ର କି ପ୍ରଥ — ଶରେ ନ ପାଶଲି ବର୍ତ୍ତି
ଛୁଟିବାରୁ ହୃଦୟେ ତା ଫୁଟି ରହିଲା ।
ସୁଦୟା ବନ୍ଧୁ ଚତୁରୀ ହୃଦୟରେ ଦୟା ଭରି
ଧରଜ-ଚୁମ୍ବକ ଯୋଗ କରି କାଢ଼ିଲା
ଆଲିଙ୍ଗନ ଲେପକୁ ଦେଇ
ଅଧର-ଅମୃତ ମହୌଷଧି ଚଖାଇ ।
(ଶଶିରେଖା — ପଦ୍ମନାଭ ଶ୍ରୀ ଚନ୍ଦନ)

Yet though I can not be loved
Still let me love.
( Lord Byron )

More happy love, more happy, happy love,
For ever warm and still to be enjoyed.
For ever pantiing and for ever young,
All breathing human passions far above.
(Ode to Gracian Urn—John Keats)

ଭଜିଥିବ ଏବେ ରଜନ୍ତ ରଜତ ରଜତ କାମ ମୁଖେ ପଡ଼ି
ଭଲ ନ ଗୃହ୍ଣିବ ଯାରି ତ ଧୂରତ ଦୂରତ ଦୂରତ-ନେଶୀ ନେହ ଫେଡ଼ି
କୋକିଳ, ଭାବବତୀ ଭାବ ଜାଣଇ
ଭଲ ଦୂର ହେଲି ଭାବନା ଭାବନା ଲଜ୍ଜାରେ ଜୀବ ଯାଉ ନାହିଁ ॥୨୫॥

ଅନ୍ୱୟ – ରେ କୋକିଳ, କାମ ମୁଖେ (କନ୍ଦର୍ପର କବଳରେ) ପଡି ତାର ରଜତ (ହାସିଦାନ୍ତ) ରଜତ (ଧବଳ) ରଜତ (ହାର) ଷ୍ୱଳିଥିବ (ଏଣେ ତେଣେ ଛିଣ୍ଡି ପଡ଼ିଥିବ)। ସେ ହରିତ (ନୀଳନେତ୍ରୀ) ହରିତ (ହରିଣ) ଓ ହରି (ଚନ୍ଦ୍ର) ତ ଭଲଭାବେ ସହିବ ନାହିଁ। ସେ ଭାବବତୀ (ଚତୁରା ବା ରସବତୀ) ଭାବ ଜାଣେ। ସେ ଭାବିନୀ (ସୁଲକ୍ଷଣା) ଭାବିନୀ (ପ୍ରିୟା) (ମୋ ପାଖରୁ ଦୂର ହେଲା। ସେ ଲଜ୍ଜାରେ ମୋ ଜୀବନ ଯାହା ନ ଯାଉଛି।

ଅର୍ଥ—ରେ କୋକିଳ, କନ୍ଦର୍ପର କବଳରେ ପଡ଼ି ସେ ଅଚେତ ହୁଅନ୍ତେ ତାର ହାସିଦନ୍ତ ପରି ଧଳା ମୋତିହାର ଛିଣ୍ଡି ଏଣେତେଣେ ପଡ଼ିଥିବ। ସେ ନୀଳନେତ୍ରୀ (କୃଷ୍ଣଡୋଳା ବିଶିଷ୍ଟା) ତାର ନେତ୍ର ଖୋଲି ହରିମାନଙ୍କୁ ଓ ଚନ୍ଦ୍ରଙ୍କୁ ସହିବ ନାହିଁ। ସେ ରସବତୀ ପ୍ରେମ ଜାଣେ। ସେ ସୁଲକ୍ଷଣା ସମ୍ମାନାସ୍ପଦା ମୋ ପ୍ରିୟତମା ମୋ ପାଖରୁ ବର୍ତ୍ତମାନ ଦୂରରେ – ଏ ଦୁଃଖରେ ମୋ ନିର୍ଲ୍ଲଜ ଜୀବନ ଯାହା ନ ଯାଉଛି।

ପଣ୍ଡ ବିରହରେ ନାୟି କନ୍ଦର୍ପକବଳିତା:—

ଅଧିବସତି ବସନ୍ତେ ମନ୍ଦିରଂ କାମା ଦୂରନ୍ତେ
ନବକଣଳସ୍ତମଳଂ ପୁଷ୍ପି ତାଙ୍ଗାରକଲ୍ପମ୍।
ବିରହମସହମାନା ଚକ୍ରବାଙ୍କସମାନା
ଚକିତମୃଗସମାନାଲୋଚନା କୋମଲାଙ୍ଗୀ ॥

(ପୁଷ୍ପବାଣ ବିଳାସ—କାଳିଦାସ)

ଅନ୍ତର୍ଗତା ମଦନବହ୍ନିଶିଖାବଲୀ ଯା
ସା ବାଧତେ କମହ ଚନ୍ଦନପଙ୍କଲେପୈଃ।
ଯଃ କୁମ୍ଭକାରପବନୋପରି ପଙ୍କଲେପ—
ସ୍ତାପାୟ କେବଲମସୌ ନ ଚ ତାପଶାନ୍ତ୍ୟୈ ॥

(ଶୃଙ୍ଗାରତିଲକ – କାଳିଦାସ)

କାମଂ ଦୂରେ ସହଚରୀ ବଶବର୍ତ୍ତି ଯତ୍ନଂସବେଶ୍ମ
ନେଦଂ କୋକୋଽଭରମପି ବିପଦ୍ଧୁନିନଂ ଦୁନୋତି।

ଆଶା ଜାଲେ। ହୃଦ କଳ ଧୃତାଃ ପ୍ରାଣରୋଧ ରୁ ଯୋ ମେ
ସୋଽୟଂ ପୀଡ଼ାଂ ଜନୟଡ଼ବଡ଼ବାବହ୍ନିତୀବ୍ରସ୍ତନୋତି ॥

(ଉଦ୍ଧବ ସନ୍ଦେଶ – ରୂପଗୋସ୍ୱାମୀ)

ବିରହ ବ୍ୟାଧିରେ          ତା ଜୀବନ ଦେହୁ
ଯାଇଥିବ ସିନା ସ୍ୱଳ୍ପ ।

(କାଦମ୍ବସ୍ତ – ବଡ଼କୁମାର ବଳଭଦ୍ର ଦେବ)

ମରାଳଗମନା ମାରଣରେ ଆହା ହେଉଥିବ କଳବଲ୍
ମରମର କୋହ ମରମରେ ଚାପି ଝୁରନେ ହୋଇ ବିକଳ
ମଲି ମଲି ବୋଲିଣ
ମଞ୍ଚ ପରେ ଗଡ଼ୁଥିବ ଜାଣ ॥

(ବିରହବାନ୍ଧବୀ—ଦରଦୀ କବି)

ବିରହିଣୀର ମୋତିମାଳ ଛିଣ୍ଡିଯାଏ: —

ଆଶା ପଲଙ୍କରେ ବସି ଖିଆ ଲେଖୁଥିବ ରେ
ଗଳେ ଥିବା ମୋତିମାଳା ଛିଡ଼ି ଲୋଟୁଥିବ ରେ
ଆହା ମୋ ଜୀବନଧନ ଜୀବନେ କି ଥିବ ରେ···

(ସଙ୍ଗୀତ – ଉପେନ୍ଦ୍ର ଭଞ୍ଜ)

ବିରହିଣୀର ଦଶଦିଗ ଅନ୍ଧକାରମୟ: —

ପାଞ୍ଚ କେ ବାଣ ପ୍ରହାରି ସେ ନିଷ୍ଠୁର ମାର ରେ
ପାଞ୍ଚ ଦୁନେ ଦିଗ କାର କରିବ ଅନ୍ଧାର ରେ ॥

(ଗୀତଗଣିତ – ଦରଦୀକବି)

[ ଅର୍ଥ – ପାଞ୍ଚ କେ ପାଞ୍ଚ, ପାଞ୍ଚ ଦୁନେ ଦଶ ।
ନିଷ୍ଠୁର କନ୍ଦର୍ପ ମୋ ସ୍ୱାମୀକୁ ତାର ପାଞ୍ଚବାଣ ପ୍ରହାର
କରନ୍ତେ ତାଙ୍କୁ ଦଶଦିଗ ଅନ୍ଧକାରମୟ ଦେଖାଯିବ । ]

ଚନ୍ଦ୍ର ଦର୍ଶନରେ ବିରହିଣୀର ଖେଦବୃଦ୍ଧି: —

ଚନ୍ଦ୍ରୋଦୟେ ସ୍ୱପ୍ୟାସ୍ତିମିରମୟୀବାପୈତିଧୃଷ୍ଟା, କମଳମୟମିବ
ଦୂୟତେ କୁଦୟମ୍, କୁମୁଦମୟ ଇବ ବିଜୃମ୍ଭତେ ମକରକେତନଃ,
ଚନ୍ଦ୍ରକାନ୍ତମୟମିବ ପ୍ରକ୍ଷରତି ନୟନଯୁଗଳମ୍, ଉଦଧିଜଳମୟାନୀବ
ପ୍ରବର୍ଦ୍ଧନ୍ତେ ଶ୍ୱସିତାନି, ଚକ୍ରବାକମୟା ଇବ ବିଘଟନ୍ତେ ମନୋରଥାଃ,

ଶୀତଜ୍ୱରରୁତେରିବ ମଣିକୁଟ୍ଟିମୋଦରସଙ୍କ୍ରାନ୍ତସ୍ୟ ରୂପ ରଜକରଣ-
ମଣ୍ଡଳସ୍ୟୋ ପର ବେପଥୁଲୁଳିତତରଲାଙ୍ଗୁଲୀନିକରଂ କରଯୁଗଳଂ
ପ୍ରସାରୟନ୍ତୀ ଶଶିସନ୍ତାପମନକ୍ଷରଂ କଥୟନ୍ତି ।

(କାଦମ୍ବରୀ, ଉତ୍ତରଭାଗ—ଭୂଷଣ ଭଟ୍ଟ)

କୃତଧବଳିମଭେଦୈଃ କୁଙ୍କୁମେନେବ କିଞ୍ଚି-
ନ୍ମଲୟରୁହରଜୋଭିର୍ଭୂଷୟନ୍ ପଶ୍ଚିମାଶାମ୍ ।
ହିମରୁଚିରରୁଣିମା ରାଜତେ ରଜ୍ୟମାନୈ-
ର୍ଜରଠକମଳକନ୍ଦଚ୍ଛେଦଗୌରୈର୍ମୟୂଖୈଃ ॥

(ଶିଶୁପାଳ ବଧ—ମାଘ)

ସ୍ୱୈରଂ କୈରବକୋରକାନ୍ ବିଦଳୟନ୍ ଯୂନାଂ ମନଃ ଖେଳୟ-
ନ୍ନମ୍ଭୋଜାନି ନିମୀଳୟନ୍ ମୃଗଦୃଶାଂ ମାନଂ ସମୁନ୍ମୂଳୟନ୍ ।
ଜ୍ୟୋତ୍ସ୍ନାଂ କନ୍ଦଳୟନ୍ ଦିଶୋ ଧବଳୟନ୍ନମ୍ଭୋଧିମୁଦ୍‌ବେଲୟନ୍
କୋକାନାକୁଳୟନ୍ ତମୋ କବଳୟନ୍ ଇନ୍ଦୁଃ ସମୁଜ୍ଜୃମ୍ଭତେ ॥

(ସୁଭାଷିତରତ୍ନଭାଣ୍ଡାଗାର)

ନନ୍ଦଲନ ଏବେ ଚନ୍ଦ୍ର ପବନ
ଫାନ୍ଦଲନ ତାହା ନ କର ଆନ
କାନ୍ଦଲନ ନବଘନକୁ ଚାହିଁ
ବନ୍ଧଲନ ତମାଳକୁ କି କହି
ଛନ୍ଦଲନ ବାହୁବଲ୍ଲୀ
କୁନ୍ଦଲନ କୁଚ          ସମ୍ପୁଟ ଶୋକରେ
ସନ୍ଧଲନ ଦୃଷ୍ଟି ସ୍ଥଳ ॥

(ଯୁଗଳରସାମୃତଲହରୀ—କବିସୂର୍ଯ୍ୟ ସଦାନନ୍ଦ ବ୍ରହ୍ମା)

ପ୍ରବେଶ ହୋଇଲା ଆସି ପ୍ରଦୋଷ କାଳ
ଶଶିକଳା ଉଦିଲା ଗଗନମଣ୍ଡଳ ।
ମାନବନ୍ତୀମାନ ଗଜରାଜ ଅଙ୍କୁଶ
ତାରାଗଣ ପଦ୍ମବନ ବିନୋଦ ହଂସ ।

ସଯୋଗିଣୀ ରସରେଖା ରସିକ ପ୍ରାଣ
ବିଯୋଗିଣୀ ହୃଦସ୍ଥଳୁ କରୁଛି କାଣ ॥
(ରୁକ୍ମିଣୀ ବିଭା – କାର୍ତ୍ତିକ ଦାସ)

ଏଇ ଜ୍ୟୋତ୍ସ୍ନାରାତେ ଜାଗେ ଆମାର ପ୍ରାଣ
ପାଶେ ତୋମାର ହବେ କି ଆଜ ସ୍ଥାନ ॥
(ଗୀତାଞ୍ଜଳି—ରବୀନ୍ଦ୍ରନାଥ ଠାକୁର)

ଜ୍ୟୋତ୍ସ୍ନାପୁଲକିତ ଏଇ ଯାମିନୀର ଏ ହେନ ସମସ୍ତ
ବିରହବେଦନା ଯେ ଗୋ ତଳେକ ଅସହ ମନେ ହୟ
ଏ ଦୁଃଖ କାହାରେ ଆମି ସୁହୃଦେଓ ଶୁନାତେ ଅକ୍ଷମ
ଏକି ଗୋ ଦୁଃସହ ଜ୍ୱାଲା ଅନ୍ତରରେ ଯନ୍ତ୍ରଣା ନିର୍ମମ ॥
(ଓମାର ଖାୟାମ କବିତା – ନରେନ୍ଦ୍ର ଦେବ

ସୁଲକ୍ଷଣା ପତିନାୟିକାର ପ୍ରୀତି ଜନ୍ମଜନ୍ମାନ୍ତର ଓ ଦାମ୍ପତ୍ୟଜୀବନର ସାର୍ଥକତା:—

ଯା ଦମ୍ପତୀ ସୁମନସା ସୁନୁତ ଆ ଚ ଧାବତ
ଦେବାସୋ ନିତ୍ୟୟା ଶିରା
ସମଞ୍ଜନ୍ତୁ ବିଶ୍ୱେ ଦେବାଃ ସମାପୋ ହୃଦୟାନି ନୌ
ସମାତରିଶ୍ୱା ସଧାତା ସମୁଦେଷ୍ଟ୍ରୀ ଦଧାତୁ ନୌ
(ଋଗ୍ ବେଦ)

[ଅର୍ଥ = ଯେଉଁ ଦମ୍ପତି ଏକ ଚିତ୍ତରେ ଯଜ୍ଞ ସମ୍ପାଦନ କରି ସ୍ୱୀୟ-କର୍ତ୍ତବ୍ୟ ପାଳନରେ ବ୍ରତୀ ହୁଅନ୍ତି, ସେମାନେ ମାନବଜୀବନରେ ଦେବତ୍ୱ ଲାଭ କରନ୍ତି । ହେ ପ୍ରଭୋ ! ଆମ ଦୁହିଁଙ୍କ ଆତ୍ମ ହୃଦୟକୁ ଅଭିନ୍ନ ରଖନ୍ତୁ । ଆମ୍ଭ ଦୁହିଁଙ୍କର ଚିତ୍ତ ଜଳଧାରା ପରି ଅବିଭକ୍ତ ରହୁ ଓ ଉଭୟେ ଉଭୟଙ୍କର ମଙ୍ଗଳକାରୀ ଓ ଉପଦେଷ୍ଟା ହେଉଁ । ]

ଅନ୍ୟୋଽନ୍ୟସ୍ୟାବ୍ୟଭିଚାରୋ
ଭବେଦାମରଣାନ୍ତିକଃ
ଏଷ ଧର୍ମଃ ସମାସେନ
ଜ୍ଞେୟଃ ସ୍ତ୍ରୀ ପୁଂସୟୋ ପରଃ ॥
( ମନୁସ୍ମୃତି )

ସତୀ ଚ ଯୋଷିତ୍ ପ୍ରକୃତିଃ ସୁନିଶ୍ଚଳା
ପୁମାଂସମଭ୍ୟେତି ଭବାନ୍ତରେଷ୍ୱପି ॥
(ଶିଶୁ ପାଳବଧ – ମାଘ)

ବିରହିଣୀ ପ୍ରିୟା କଥା ମନେ ପକାଇ ବିଦେଶୀ ବିରହୀର ଆତ୍ମାଧିକ୍କାରଃ—
ଦଳତି ହୃଦୟଂ ଶୋକୋଦ୍ ବେଗାଦ୍ ଦ୍ୱିଧା ନ ତୁ ଭିଦ୍ୟତେ
ବହତି ବିକଳଃ କାୟୋ ମୋହଂ ନ ମୁଞ୍ଚତି ଚେତନାମ୍ ।
ଜ୍ୱଲୟତି ତନୂମନ୍ତର୍ଦାହଃ କରୋତି ନ ଭସ୍ମସତାତ୍
ପ୍ରହରତି ବିଧିର୍ମର୍ମଚ୍ଛେଦୀ ନ କୃନ୍ତତି ଜୀବିତମ୍ ॥
( ଉତ୍ତରରାମଚରିତ—ଭବଭୂତି)

ହା ହା ଦେବି ! ସ୍ଫୁଟତି ହୃଦୟଂ ଧ୍ୱଂସତେ ଦେହବନ୍ଧଃ
ଶୂନ୍ୟଂ ମନ୍ୟେ ଜଗଦବିରଳଂ ଜ୍ୱାଲମନ୍ତର୍ଜ୍ୱଲାମି ।
ସୀଦନ୍ନନ୍ଧେ ତମସି ବିଧୁରୋ ମଜ୍ଜତୀବାନ୍ତରାତ୍ମା
ବିଷ୍ୱଙ୍ମୋହଃ ସ୍ଥଗୟତି କଥଂ ମନ୍ଦଭାଗ୍ୟଃ କରୋମି ॥
( ଉତ୍ତରରାମଚରିତ – ଭବଭୂତି)

କିଂ କରିଷ୍ୟତି କିଂ ବଦିଷ୍ୟତି ସା ଚିରଂ ବିରହେଣ ।
କିଂ ଧନେନ ଜନେନ କିଂ ମମ ଜୀବିତେନ ଗୃହେଣ ॥
(ଗୀତଗୋବିନ୍ଦ – ଜୟଦେବ)

ପ୍ରିୟା ସହିତ ବିହାର ନାହିଁ, ବିଚ୍ଛେଦ ଯାହାର
ଧିକ ଜୀବନ ତାହାର ହେଉ ସଂହାର
ଓଷ୍ଠେ ସୁଧା ସୁଦେହାର ଆଉଁ ଅମରେ ମୀହାର
କର କରନ୍ତୁ ଆହାର ତାଙ୍କୁ ଜୁହାର
ତାଙ୍କ ଗତି ସୃଷ୍ଟି ବାହାର
ବାଳା ବାହୁ ଆଉ ଗଳେ ବହନ୍ତି ହାର ॥
( ପ୍ରେମସୁଧାନିଧି—ଉପେନ୍ଦ୍ର ଭଞ୍ଜ)

ପ୍ରୀତି ହୋଇ ଯେବେ ଏଡ଼େ ମଧୁର
କ୍ଷୁଧା ତୃଷା ପୁଣି ହୁଏ ବିଧୁର ।

ପୁଣି ଦଇବେ ହୋଇଲେ ଦମ୍ପତି
ପଦତଳେ ମିଳେ ଇନ୍ଦ୍ର ସମ୍ପତ୍ତି !
ପଶୁମାନେ ବଶ ହେଲେ ଏ ରସେ
ଯେହୁ ପାଷାଣ ସେ ଏଥି ନ ରସେ ॥
(ରସିକହାରାବଳୀ—ଉପେନ୍ଦ୍ର ଭଞ୍ଜ)

ରଜାଙ୍କୁ ହେବାର ରାଜ୍ୟର ଭ୍ରଷ୍ଟ
ଯୁବାଙ୍କୁ ହେବାର ପତ୍ନୀକଷ୍ଟ
ବୋଲେ ଉପଇନ୍ଦ୍ର ଭଞ୍ଜ ବୀରର
ଏଥୁଁ ବଳି ଆଉ ନାହିଁ କଷ୍ଟ ॥
(ରସିକହାରାବଳୀ – ଉପେନ୍ଦ୍ର ଭଞ୍ଜ)

ଛାଡିଥିଲେ ନରପତି ଶୋଭାପାଇ ଗଢ ଥିଲେ ଚନ୍ଦ୍ର ଉଜ୍ଜ୍ୱଳ
ପଦ୍ମଥିଲେ ସରୋବର ମଞ୍ଜୁଳ
ଯେଣେ ଯେହୁ ମତି ଯୁବତୀ କତରେ ଯୁବା ଜନର ମଙ୍ଗଳ ରେ
ସୁନ୍ଦର ! ଲଭ ନାହିଁ ଯେ ବଞ୍ଛିତ ସୁରସ
ମହା ସମ୍ପତ୍ତି ଥାଇ ହେବ କସ
ନସ୍ଥନ ନ ଥାଇ ଦେବଦରଶନ ଭଳି ପ୍ରାପ୍ତ ଉପହାସ ॥
(ଲାବଣ୍ୟବତୀ—ଉପେନ୍ଦ୍ର ଭଞ୍ଜ)

କି ହେବ ଇନ୍ଦ୍ର ହୋଇଲେ ସବ ସମ୍ପଦେ ସେ
ପ୍ରିୟାହୀନଠାରୁ ପାପୀ ନାହିଁ ମହୀଦେଶେ ॥
(ଲାବଣ୍ୟବତୀ – ଉପେନ୍ଦ୍ର ଭଞ୍ଜ)

ଯାହା ହେଲା ତୋର ମୋର ବିଚ୍ଛେଦ
ନୋହିଲା କାହିଁକି ମୋ ଶିରଚ୍ଛେଦ ॥
(ଲାବଣ୍ୟବତୀ – ଉପେନ୍ଦ୍ର ଭଞ୍ଜ)

ମନ୍ଦ ଶବଦେ ସ୍ତବଧେ ମନ୍ଦେମନ୍ଦେ ସ୍ନାନକୁ ବଧୂ ବାହାର
ପିଣ୍ଡାରେ ଥିଲା ପଥିକ ସବେ ମହି ହେବାକୁ ହୃଦ ତାହାର
ମୁଁ ମଲି; କେଉଁ ବୁଦ୍ଧିରେ ବିଦେଶ ଭଲି
ପ୍ରିୟ ଏ ଛବିକି ନ ଦେଖିଲି । ତାକୁ ମନମଥଶରେ ଦେଲି ॥
(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ—ଉପେନ୍ଦ୍ର ଭଞ୍ଜ)

ସ୍ୱଚ୍ଛମାରେ ଚନ୍ଦ୍ରକିରଣେ ଅମ୍ବର ହରଲେ ନିକରେ ବୁଡ଼ି,
ଚତୁସ୍ତ୍ରୀ ଏତେ ରୁ ରୁଣତେ ମୋ ନେତ୍ର ପଦ୍ମକର ଯେନ ଯୋଡ଼ି ।
ଚମ୍ପାଗୋଷ୍ଠୀ ରଥ ରଚିଲେ ନ ସହି କଟିକି ଉରୁରେ ଭିଡ଼ି,
ସ୍ମିପି ଅଧର ଅଧରେ ମୋ ତନୁରେ ଓଦାବାସ ପ୍ରାୟେ ଜଡ଼ି ।
ଚକ୍ଷୁ ପିଚ୍ଛୁଡ଼ିବା ନ ଥାଇ ତୋହର ଲବେ ମୋ ପାଣ ନ ଛାଡ଼ି,
ଚନ୍ତ୍ରି କହେ ଉପଇନ୍ଦ୍ର ମଙ୍ଗଳ ବିଦେଶ ପୁରୁଷାର୍ଥ ପୋଡ଼ି ॥
(ଚମ୍ପୂ—ଉପେନ୍ଦ୍ର ଭଞ୍ଜ)

କି କଲି ବିଧି ମୋତେ ତାକୁ କି କଲି
କପାଳେ ଏହି ଦଶା ଲେଖି ସେ ଥିଲି
ଆହା କନକଗୋରୀ
କରିବରଗମନା ମୋ ପ୍ରାଣେଶ୍ୱରୀ
କଷ୍ଟ ତ ଅନୁଭବି ନାହିଁ କଣୋରୀ
କମ୍ପା ଥଇଲି ଛାଡ଼ି ବିଦେଶ କରି ॥
(ରସକଲ୍ଲୋଳ—ଦୀନକୃଷ୍ଣ ଦାସ)

ଯେ ତପସ୍ୱୀରେ ତପ ଚଳ ପଞ୍ଚାଗ୍ନି ତପତରେ ବା ହୋଇଥାଏ କ୍ଷୀଣ
ସେ ଦିନା ତଳେଟ ରାଜ ରାଜବାଷୀକୁ ରାଜ କରାଇ କରେ ମଦନାଧୀନ
ପ୍ରାଣପ୍ରିୟ !
ଆଜାବ ଯାର ଚନ୍ଦ୍ରମୁଖୀ
ତା ଜୀବ ଦିନା ଜୀବେ ଲେଖି
ପାଞ୍ଚ ବେଶର ତାର "ଆଜାବେଶ୍ୱରୀ" ଗର ଯା କଭେ ଧାତା ନାହିଁ ଲେଖି ॥
(ଚନ୍ଦ୍ରକଳା—କବିସୂର୍ଯ୍ୟ ବଳଦେବ ରଥ)

କାନ୍ତା ବିନା କାନ୍ତ ପ୍ରାଣ ସ୍ୱଭାବେ ବିକଳ
ବିକଳ ଜୀବନ ମଣେ ଜଗତେ ବିଫଳ ॥
(ତପସ୍ୱିନୀ—ଗଙ୍ଗାଧର ମେହେର)

ବାଣିଜ୍ୟକାରେ ବାଣିଜ୍ୟ ଛାଡ଼ିଲେ
ପାଣିକ ପାଣି ଭିତରେ ବୁଡ଼ିଲେ ।

ତରଣୀବିନା ନଦୀ ନୋହେ ପାର
ତରୁଣୀ ବିନା ଯୁବାକାଳ ପର ॥
(କୃଷ୍ଣବିଳାସ – ଚକ୍ରପାଣି ପଞ୍ଚନାୟକ)

ଫାଟି ଯାଉଛୁ ହୃଦୟ ଶରୀରର ବନ୍ଧନ
ଛିଣ୍ଡି ଯାଉଅଛୁ ସବେଗେ, ଶୂନ୍ୟ ଦିଶେ ଭୁବନ ।
ଅନ୍ତର ଜଳୁଛୁ ମୋହର ଅବିରତ ଜ୍ୱାଳାରେ
ଅବସନ୍ନ ଆସି ଯ ଉଛୁ ବୁଡି ଶୋକ-ଅନ୍ଧାରେ ।
ଦଶଦିଗ ମୋହେ ଆଚ୍ଛନ୍ନ କରି ଦିଶୁ ତ ନାହିଁ
କି କରିବି ମନ୍ଦଭାଗ୍ୟ ମୁଁ ବସିଅଛୁ କମ୍ପାଇ ॥
(ଉତ୍ତର ରାମ ଚରିତ – ମଧୁସୂଦନ ରାଓ)

ଶୂନ୍ୟ ସଂସାର ମୋର ଶୂନ୍ୟ ସଦନ
ଚୁମ୍ବନ ଆଲିଙ୍ଗନ ମୋତେ ସ୍ୱପନ
କଏ ଦେବ ନେବ ମୋ ପ୍ରେମ-ପୀୟୂଷ
ନୀରବ ହାହାକାରେ ପିବ ଆୟୁଷ ॥
(ବନ୍ଧୁମିଳନ ଚତ୍ରୁ – ଉତ୍କଳମଣି ଗୋପବନ୍ଧୁ)

ଓ ଗୋ ପ୍ରିୟେ ! ତୋମାର ବିରହେ
ନାହିଁ ଦହେ
ଯାହାର ହୃଦୟ,
କୋଥାୟ ଆଛେ ହେନ ନରଦୟ !
(ଓମାରଖାୟ:ମ କବିତା – ନରେନ୍ଦ୍ର ଦେବ)

ଇଂରାଜୀ କବିତାମାନଙ୍କରେ ପ୍ରେମର ମହତ୍ତ୍ୱ :—

O Poworful love, that in some respeots
makes a beast a man, in some other
a man a beast .
(Willam Shakespeare)

Sweet to the miser are his glittering heaps
Sweet to the father is his first born's birth

But sweet still than this
Than these, than all
Is first and passionate love- i t stands alone.
(Lord Byron)

But of all delightful sounds
Of evening or of morn;
The sweetest is the voice of love
That welcomes his return.
(Robert Southey)

Ah love, let us be true
To one another; for the world which seems
To lie before us like a land or dream.
(Dover Beach – Mathew Arnold)

ମଣିବ ତାରକ ସମାନ କୁନ୍ଦକୁ କୁନ୍ଦ କୁ କୁନ୍ଦକୁ ହୋଇବ
ମଦାଳସୀ କୁନ୍ଦ ସଙ୍ଗେ କି ମୁକୁନ୍ଦ ମୁକୁନ୍ଦ ମୁକୁନ୍ଦ ହୋଇବ
କୋକିଳ, ମହାଘୋର ଭୟ କରିବ
ମନେ ଚିନ୍ତୁଥିବ କାନନ କାନନ କାନନ ସମାନ ମଣିବ ।୨୫।

ଅନ୍ୱୟ—ରେ କୋକିଳ, ସେ କୁନ୍ଦକୁ (ବିଷ୍ଣୁଙ୍କୁ) ତାରକ (ଉଦ୍ଧାର କର୍ତ୍ତା) ସମାନ ମନେ କରିବ । କୁନ୍ଦ (କୁନ୍ଦ ଫୁଲ) ତାକୁ କୁନ୍ଦକୁ (ତ୍ରିଶୂଳ) ପରି କୁ (ଖରାପ) ହେବ । ମଦାଳସୀର କୁନ୍ଦ (ପଦ୍ମ) ମୁଖ ସଙ୍ଗେ ଯେପରି ମୁକୁନ୍ଦ (ପାରଦ) ପରି ସ୍ୱଚ୍ଛ । ସେ ମୋର ମୁକୁନ୍ଦ (ମୁକ୍ତିଦାୟିନୀ) ଓ ମୁକୁନ୍ଦ (କୁବେର ନିଧି) ଅଟେ । ସେ ମହାଭୟରେ ଥିବ । ସେ ମନେ ମନେ କାନନ (କ=ସୂର୍ଯ୍ୟ+ଆନନ ଅର୍ଥାତ୍ ଦିବସ) କାନନ (ଗୃହ)କୁ କାନନ (ବନ) ପରି ମଣୁଥିବ ।

ଅର୍ଥ—ରେ କୋକିଳ, ସେ ବିଷ୍ଣୁଙ୍କୁ ତାର ଉଦ୍ଧାରକର୍ତ୍ତା ବୋଲି ମନେ କରିବ । କୁନ୍ଦଫୁଲକୁ ତ୍ରିଶୂଳ ପରି ଖରାପ ମଣିବ । ମଦାଳସୀର

ପଦ୍ମମୁଖ ପାରଦ ପରି ସ୍ୱଚ୍ଛ ଅଟେ । ସେ ମୋର ମୁକ୍ତିଦାୟିନୀ ଓ ଅମୂଲ୍ୟନିଧି ଅଟେ । ସେ ଘୋର ଭୟରେ ଦିବସକୁ ମନେ ମନେ ଚନ୍ଦ୍ରାକର (କାରଣ ଦିନରେ କାମତାପ ଅପେକ୍ଷାକୃତ କମ୍ ଥାଏ) ତାର ଘରକୁ ବନ ପରି ମଣୁଥିବ ।

ନାୟ ମୁକ୍ତିଦାୟିନୀ ଓ କାମସନ୍ତାପରୁ ରକ୍ଷାକର୍ତ୍ତ୍ରୀ :—

କାହ୍ନାକୁ ବୋଲନ୍ତି ଆରେ କୁନ୍ଦଦନ୍ତୀ ତୁ ମୋର ପଞ୍ଚଭୂତ ପ୍ରାଣ
କାମ ପଞ୍ଚବାଣ ମୁର୍ଚ୍ଛୁ ପରିତ୍ରାଣ କରିବାକୁ ଭୁଜ କାରଣ
କିଶୋରି ! କାଲୁ ତୁ ଏବେ ସର୍ବ ବାଧା
କାମ ମଣ୍ଡଳାର୍କ ମଣ୍ଡନ କରି ଯେ ଯାଉନ୍ତି ତାର ସବୁ ସୁଧା ।
(ରସକଲ୍ଲୋଳ—ଦୀନକୃଷ୍ଣ ଦାସ)

ଯୁବତୀ କଦମ୍ବ ରାଜା ଅବଲମ୍ବ ହୋଇଲ୍ ଯେବେ ନିକର ରେ
ମୁକ୍ତିକୁ ସନ୍ଧିକ ହେଉ ଅଟ ନିକ୍ଷ ହୋଇ ପଂଚ୍ଚ ପଞ୍ଚଶର ରେ ॥
(କିଶୋରଚନ୍ଦ୍ର ନନ ଚମ୍ପୂ—କବିସୂର୍ଯ୍ୟ ବଳଦେବ ରଥ)

ଅଙ୍ଗନା ଅନା ଅନା ବରି ଦାସ ନାରନା
ଯେନ ବାରେ ସୁମନା ମନା
ଅଷ୍ଟେ ନବୀନା ବନା ଦୋଷେ ହେବ ନା
ବିନାଶ ମୁଁ ହେଜ ସ୍ୱବନା ବନା
ପ୍ରାଣବନ୍ଧୁ !
ଅପାଙ୍ଗ ରଙ୍ଗେ ଅନା ଅନା
ଅନଙ୍ଗ କରେ ଚେନା ଚେନା
ଅବ୍ଜହାସି ! ନାଶି ନା କି ସୁଖ ମନା ମନା —
କୁଲେ ସ୍ୱପନା ନା ନା ନା ନା ॥
(ଅମ୍ବିକାବିଳାସ—ବଳଭଦ୍ର ଭଞ୍ଜଦେବ)

There has fallen a splendid tear,
From the passion flower at the gate,
She is coming, my dove, my dear;
She is coming, my life, my fate.
(Maud--Alfred Lord Tennyson)

ଯୋଷାମଣି ମୀନକେତନ କେତନ କେତନ କେତନ ରଚାଇ
ଯେବେ ଗୃହିଁଦେବ କେତନ କେତନ କେତନ ତେବେ ମୋହଯାଇ
କୋକିଳ, ଯତନେ ତାର ସଖୀଗଣ
ପୁବଣ୍ଠ ଶରୀରେ କାଞ୍ଚନ କାଞ୍ଚନ କାଞ୍ଚନ କରିବେ ଲେପନ ।୨୭।

ଅନ୍ୱୟ—ରେ କୋକିଳ, ମୋ ଯୋଷାମଣି ମୀନକେତନ (କନ୍ଦର୍ପ) କେତନ (ଶରୀର) କେତନ (କାର୍ଯ୍ୟ) ଦେଖି ତାଙ୍କୁ କେତନ (ନିମନ୍ତ୍ରଣ) କରିଥିବ । ସେ କେତନ (ନାଗେଶ୍ୱର ଫୁଲ) କେତନ (ସ୍ଥାନ) ଓ କେତନ (ଚିହ୍ନ)କୁ ଦେଖି ମୋହ ଯିବ । ତାର ସଖୀମାନେ ଯତନରେ ସେ ମୁବଣ୍ଠର ଶରୀରରେ କାଞ୍ଚନ (ପଦ୍ମକେଶର) କାଞ୍ଚନ (ନାଗକେଶର) ଓ କାଞ୍ଚନ (ଚମ୍ପା) ଚଢ଼ାଉଥିବେ ।

ଅର୍ଥ—ରେ କୋକିଳ, ମୋ ନାରୀମଣି କନ୍ଦର୍ପର ଅଙ୍ଗକୁ ସର୍ବଦା ଭାବି ଭାବି (ଆଖି ଆଗରେ କନ୍ଦର୍ପର ରୂପ) ଓ ତାର କାର୍ଯ୍ୟକଳାପ (ବାଣ ପ୍ରହାର) ଦେଖି ତା ପ୍ରତି ବଶୀଭୂତା ହୋଇ ତାଙ୍କୁ ଆରାଧନା କରୁଥିବ । ସେ ନାଗେଶ୍ୱର ଫୁଲ; କେଳିସ୍ଥାନ ଓ ତାର ଅଙ୍ଗରେ ଥିବା ସମ୍ଭୋଗ ଚିହ୍ନମାନ (ଚୁମ୍ବନ ଓ ନଖକ୍ଷତ ଆଦି)କୁ ଦେଖି ମୋହ ଯାଉଥିବ । ତାର ସଖୀମାନେ ତାର ଅଙ୍ଗରେ ପଦ୍ମକେଶର; ନାଗକେଶର ଓ ଚମ୍ପାଫୁଲମାନ ଚଢ଼ାଉଥିବେ ।

ବିରହିଣୀର କନ୍ଦର୍ପ-ଆରାଧନା:—

ତୃପ୍ତି କରିବାକୁ ଜୀବନଧନଙ୍କୁ ମଦନଦ୍ୱିଜ ଗୃହବାରେ
ସୁମନେ ନୈବେଦ୍ୟପାତ୍ରୀରେ ବାରି ଭରି ସୁମୁଖୀ ବସିଛି ଦେବାରେ
ସାହ କୃପଣ, ସନ୍ନେଭତା ତାହା ନବାରେ
ସ୍ୱସ୍ତିକପୂର କାରି ପରି ପରତେ ହେ ଶିବ ବୋଲି ବୋଲେ ବାରେ ॥
(ସୁଭଦ୍ରାପରିଣୟ – ଉପେନ୍ଦ୍ରଭଞ୍ଜ)

ନାରୀଅଙ୍ଗରେ ସମ୍ଭୋଗ ଚିହ୍ନ ବର୍ଣ୍ଣନା:—

ଆଶ୍ଲେଷଚୁମ୍ବନନଖକ୍ଷତକାମବୋଧ-
ଶୀଘ୍ରତ୍ୱମୈଥୁନମନନ୍ତସୁଖପ୍ରବୋଧମ୍ ।

ପ୍ରୀତେୟ୍ରତୋଽପି ରସଭବନମେବ କାର୍ଯ୍ୟ-
ମେବଂ ହ୍ୟତାନ୍ତଚରୁଣଃ ସୁଚରଂ ରମନ୍ତେ ।
(ନାଟ୍ୟଶାସ୍ତ୍ର—ଭରତ)

ବପକ୍ଷଚନ୍ଦ୍ରେନ୍ମଥନାନ୍ନଖବ୍ରଣା-
ସ୍ତ୍ରିଦେହତା ବକ୍ରମମଣ୍ଡଲେନ ଯେ ।
ହୃତସ୍ୟ ଶେଷାଽବ କୁଙ୍କୁମସ୍ୟ ତାନ୍
ବିକନ୍ଥନୀସ୍ତାନ୍ଦଧୃରନ୍ୟଥା ସ୍ତ୍ରିୟଃ ॥
(କିରାତାର୍ଜୁନୀୟ—ଭାରବି)

କ୍ଷତୈରସଂଚେତିତ-ଦନ୍ତ-ଲବ୍ଧୈଃ
ସ୍ୱୋଗ-କାଳେଽବଗତେ ପ୍ରଭାତେ ।
ଅଶଙ୍କିତାଽନ୍ୟୋନ୍ୟକୃତଂ ବ୍ୟଲୀକଂ
ବିୟୋଗ-ବାହ୍ୟୋଽପି ଜନୋଽତିରାଗାତ୍ ॥
(ଭଟ୍ଟିକାବ୍ୟ, ୧୧ଶ ସର୍ଗ)

କୁଚକଳସମୁଗାନ୍ତମୀମଙ୍କାନଂ ନଖାଙ୍କଂ
ସପୁଲକତନୁ ମନ୍ଦଂ ମନ୍ଦମାଲୋକମାନା ।
ବିନିହିତବଦନଂ ମା ବୀକ୍ଷ୍ୟ ବାଲା ଗବାକ୍ଷେ
ଚକିତଚକିତନତାଙ୍ଗୀ ସଦ୍ମ ସଦ୍ୟୋ ବିବେଶ ॥
ଭାମିନୀବିଳାସ — ପଣ୍ଡିତରାଜ ଜଗନ୍ନାଥ)

କରଜକ୍ଷତ ଦଶନଘାତ କୁଚମଣ୍ଡଳେ ଦିଶେ
କୀରଦଂଶନ ବିମ୍ବସମାନ ଅଧର ପରକାଶେ ।
କଟି ବସନ ପିନ୍ଧା ବିଧାନ ଶିଥିଳ ହୋଇ ଖସେ
କେଶର ଭସ୍ମେ କୁରଙ୍ଗୀ ପ୍ରାପ୍ତେ ବ୍ୟାଘ୍ର ଚଢ଼ପାଶେ ॥
(ରସକଲ୍ଲୋଳ – ଦୀନକୃଷ୍ଣ ଦାସ

ନାୟିକାର ମୂର୍ଚ୍ଛନା ଆଦି ଅବସ୍ଥା:—
ଅଙ୍ଗେ ସ୍ୱେଦଃ ଶ୍ଳଥତ୍ୱଂ ଚ
କେଶବସ୍ତ୍ରାଦି ସଂବୃତିଃ ।

ଜାତେ ଚ୍ୟୁତସୁଖେ ନାର୍ଯ୍ୟା
ବିରମେଚ୍ଛା ନ ଜାୟତେ ॥
(ନାଟ୍ୟଶାସ୍ତ୍ର—ଭରତ)

ମୂର୍ଚ୍ଛନାମୀଲନଂ ଗୃଷ୍ଠଶୋଷ୍ଟ୍ୟୁତକାଳସ୍ୟ ସୂଚକମ୍ ॥
(ନାଟ୍ୟଶାସ୍ତ୍ର – ଭରତ)

ମୂର୍ଚ୍ଛନାମୀଲନଂ ଗୃଷ୍ଠଶୋଷ୍ଟ୍ୟୁତକାଳସ୍ୟ ଲକ୍ଷଣମ୍ ॥
(ରତିରହସ୍ୟ)

ବିରହିଣୀର ଉପଶ୍ଚର:—

ଉପଚଚ୍ଚର ଚରଂ ମୃଦୁଶୀତଳୈ—
ର୍ଜଲଜନାଲମୃଣାଲଜଲାଦିଭିଃ ।
ପ୍ରିୟସଖୀନିବହଃ ସ ତଥାନମା—
ଦସ୍ମମବାପ ଯଥା ଲଘୁଚେତନାମ ॥
(ନୈଷଧଚରିତ—ଶ୍ରୀହର୍ଷ)

ରମଣୀ ବିକମ ବିକମ ବିକମ ଗୃହି ତା ଭ୍ରମ ହୋଇଥିବ
ରଞ୍ଜିନୀ କାହାର ବିକମ ବିକମ ବିକମ ଭବି ତା ତେଜିବ
କୋକିଳ, ରସା ଚରିବ ନଖେ ବସି
ସମ ଅନାଇଲେ କୁସୁମ କୁସୁମ କୁସୁମରେ କର ନିବେଶି ।୧୭।

ଅନ୍ୱୟ – ରେ କୋକିଳ, ମୋ ରମଣୀ ବିକମ (ଶ୍ରେଷ୍ଠ) ବିକମ (ବିଷ୍ଣୁ) ବିକମ (ଚରଣ)କୁ ଦେଖି ଭ୍ରମ ହେଉଥିବ । ରଞ୍ଜିନୀ କାହାର ବିକମ (ଗତି) ବିକମ (ସାହସ) ଓ ବିକମ (ବେଗ) ଭବ ତାହା ତେଜିବ । ସେ ନଖରେ ଭୂମି ବିଦାରୁଥିବ । ସମ (ତମାଳ)କୁ ଗୃହିଲେ ସେ କୁସୁମ (ଚକ୍ଷୁପୀଡ଼ା) କୁସୁମ (ଫୁଲ) ଓ (ଫଳ)ରେ କର ନିବେଶି ବସିଥିବ ।

ଅର୍ଥ—ରେ କୋକିଳ; ମୋ ରମଣୀଶ୍ରେଷ୍ଠା ବିଷ୍ଣୁଙ୍କ (ଏଠାରେ ମୋର ପ୍ରତିମୂର୍ତ୍ତି) ଓ ପଦଚନ୍ଦ୍ରକୁ ଦେଖି ଭ୍ରମ ହେଉଥିବ । ସେ ମନରଞ୍ଜନା ମୋର ବିରହରେ ଅନ୍ୟ କାହାର ତା ପ୍ରତି ଗମନ, ସାହସ ଓ ଆକ୍ରମଣ

(ଏଠାରେ ପ୍ରେମଜନିତ ଆଲିଙ୍ଗନାଦି)କୁ ସ୍ମରି ସେ ଭ୍ରମ ତ୍ୟାଗ କରିବ । ସେ ନଖରେ ଭୂମି ବିଦାରୁଥିବ । ତମାଲବୃକ୍ଷକୁ ଦେଖିଲେ (ଶ୍ୟାମଳ ବର୍ଣ୍ଣ ହେବାରୁ) ଚକ୍ଷୁପୀଡ଼ା ଅନୁଭବ କରି ଫୁଲ (ଏଠାରେ ମଲ୍ଲୀ ଫୁଲକୁ ଧରି ମଲ୍ଲ ବୋଲି କହୁ) ଓ ଫଳ (ଏଠାରେ ନାରିକେଳ ସଦୃଶ କୁଚ)ରେ ହସ୍ତ ଦେଇ ବସିଥିବ ।

ରାଧା ରମଣୀ ଶ୍ରେଷ୍ଠାः—

ତନ୍ୱୀ ଶ୍ୟାମା ଶିଖରଦଶନା ପକ୍ୱବିମ୍ବାଧରୋଷ୍ଠୀ
ମଧ୍ୟେ କ୍ଷାମା ଚକିତହରିଣୀପ୍ରେକ୍ଷଣା ନିମ୍ନନାଭିः ।
ଶ୍ରୋଣୀଭାରାଦଲସଗମନା ସ୍ତୋକନମ୍ରା ସ୍ତନାଭ୍ୟାଂ
ଯା ତତ୍ର ସ୍ୟାଦ୍ ଯୁବତିବିଷୟେ ସୃଷ୍ଟିରାଦ୍ୟେବ ଧାତୁः ॥

(ମେଘଦୂତ – କାଳିଦାସ)

ଅଦ୍ୟାପି ତାଂ କ୍ଷିତିତଳେ ବରକାମିନୀନାମ୍
ସର୍ବାଙ୍ଗସୁନ୍ଦରତୟା ପ୍ରଥମୈକରେଖାମ୍ ।
ସଂସାର-ନାଟକ ରସୋତ୍ତମ-ପାନପାତ୍ରୀଂ
କାନ୍ତାଂ ସ୍ମରାମି କୁସୁମାୟୁଧ-ବାଣଖିନ୍ନାମ୍ ॥

(ଚୌରପଞ୍ଚାଶିକା – ବିଲ୍ହଣ)

ଅବନୀ ମଣ୍ଡଳେ ଯେତେ ଯେତେ ତରୁଣୀ
ସର୍ବାଙ୍ଗ ସୁନ୍ଦର ସେ ଯେ ନାରୀ-ଅଗ୍ରଣୀ ।
ଯେତେବେଳେ କରେ କାମ ସୁନ୍ଦରୀ ଲେଖା
ଆଗ କରି କାଟଇ ମୋ ପ୍ରିୟାର ରେଖା ।
ଜଗତ ନାଟକ ରସେ ଅତି ରୁଚିର
ମଣିମୟୀ ଗାତ୍ରୀ ଇଚ୍ଛା ଯୁବତୀଙ୍କର ॥

(ଇଚ୍ଛାବତୀ – ଧନଞ୍ଜୟ ଭଞ୍ଜ)

ରସାରେ ସାର ସୁରସ ସୁରସୀ
ସସାର ଶିରୀ ସୁରସ-ସରସୀ ॥

(ଚିତ୍ରକାବ୍ୟ ବନ୍ଧୋଦୟ—ଉପେନ୍ଦ୍ର ଭଞ୍ଜ)

ନବସଙ୍ଗ ନାୟିକା କେଉଁ ପୁଂସ
ବସି ଭାବନା କରେ ନାଗପାଶ ।
ବରବରନା ସାରସ-ଗମନା
ମଣ୍ଡମଣ୍ଡନାକାଙ୍କ୍ଷ ସେ ସୁମନା ।
ଚନ୍ଦ୍ରବଦନା ଷ୍ମରକଦଶନୀ
ଘନାଭ୍ରୂନ ରସଦାୟୀ ମାନିନୀ ।
ଧନ କି ସୁନ୍ଦର ଭାବସରଣୀ
ରମଣୀଙ୍କ ରତ୍ନ ସାର ତରୁଣୀ ॥
(ଚିତ୍ରକାବ୍ୟ ବନ୍ଧୋଦୟ — ଉପେନ୍ଦ୍ର ଭଞ୍ଜ)

ବାନ୍ଧବୀ ପଣ ମୋ ନାହିଁ ସୂନ୍ଦସ୍ୟ
ବାସେ ଦେହ ସଜ ସରୋଜ ପଶ ॥
(ବୈଦେହୀଶ ବିଳାସ—ଉପେନ୍ଦ୍ର ଭଞ୍ଜ)

କଲି ଯାହା ଦର୍ଶନ ତାହା ଲକ୍ଷଣ
କଳାରେ ଅଛୁ ସେହୁ ବ୍ରହ୍ମାଣ୍ଡେ ଏକ ।
କଲି ନାହିଁ ଯାହାକୁ ସେ ବର୍ଣ୍ଣକ
କରେ ଭାବନା କେହୁ ଏ ଏତେ ଠିକ ।
(କଳାକଉତୁକ—ଉପେନ୍ଦ୍ର ଭଞ୍ଜ)

ବଳି ଶୋଭା ଶୋଭା ବଳି ବଳି
ଚଳି କେହ୍ୱ କି ତା କଳି କଳି
ଅଳକ ନ ମାନ ଦେଖିଛୁ ନୟନ
ପଦ୍ମିନୀ କରେ ଅଳି ଅଳି
ମୃଗଦୃଷ୍ଟି,
ସ୍ୱର୍ଗୀୟ-ସୁଷମା କରେ ସୃଷ୍ଟି ॥
(ଇନ୍ଦୁରେଖା—ଗୋଲୋକଚନ୍ଦ୍ର ପ୍ରଧାନ)

ଭ୍ରଣସ୍ୱିନୀ ପ୍ରଣୟୀକୁ ଚନ୍ଦ୍ରାକର ତାଙ୍କୁ ଲଭକରେ ଓ ପରସ୍ପର ପ୍ରୀତ:—
ଯୋ ଯଦଚ୍ଛତ ୬ସ୍ୟ ତତ୍ ॥
(କଠୋପନିଷଦ)

ଦୂରେ ଥିଲେ ପାଶେ ଅଛୁ ଥିବୁ ମନେ ଘେନ
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ
ପ୍ରୀତି ଅଭେଦ ତାଙ୍କର
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।।
(ପ୍ରେମ ସୁଧାନିଧି—ଉପେନ୍ଦ୍ର ଭଞ୍ଜ)

ଛୁଡ଼ି ତୋତେ ଯାଇ ଧନ ପାରିବି କି ମୁହିଁ
ଜ୍ୟୋତ୍ସ୍ନା ଛୁଡ଼ି ଏ ଭବେ ବିଧୁ କି ରୁହଇ
ଯହିଁ ଥାଅ ରୂହ ବାଳା
ଦିବା ନିଶି ଦେଖୁଥିବି ମୁଁ ତୋହର ଲୀଳା ।।
(କୋଣାର୍କେ – ନୀଳକଣ୍ଠ ଦାସ)

ଯେତେ ଦୂରେ ଥିଲେ                ମାନସ-ପଟଳେ
ଭାସିବ ତୁମର ଛବି
ପ୍ରଣୟ-ଡୋରରେ                ବନ୍ଧା ଗୋ ଯେସନ
କମଳିନୀ ସହ ରବି ।।
(ମିଳନମାଧୁରୀ—ଦରଦୀ କବି)

ପ୍ରେମଜନିତ ଆକ୍ରମଣ ଅର୍ଥାତ୍ ଆଲିଙ୍ଗନ, ଚୁମ୍ବନ, ନଖକ୍ଷତ ଓ ନୀବୀମୋକ୍ଷ ଆଦି ରତିର ଅଷ୍ଟ ଲକ୍ଷଣ: –

ଆଶ୍ଳେଷଂ ପ୍ରଥମଂ କୁର୍ଯ୍ୟାତ୍, ଦ୍ୱିତୀୟଂ ଚୁମ୍ବନଂ ତଥା ।
ତୃତୀୟଂ ନଖଦାନଞ୍ଚ, ଦଂଷ୍ଟ୍ରାଘାତଂ ଚତୁର୍ଥକମ୍ ।।
ପଞ୍ଚମଂ କ୍ଷେପଣଂ ପ୍ରୋକ୍ତଂ, ଷଷ୍ଠଂ ପ୍ରହରଣଂ ତଥା ।
ସପ୍ତମଂ କଣ୍ଠଶବ୍ଦଶ୍ଚ, ବନ୍ଧାଖ୍ୟଂ ଚାଷ୍ଟମଂ ରତମ୍ ।।
(ପଞ୍ଚସାୟକ – କବିଶେଖର ଜ୍ୟୋତିରୀଶ୍ୱର)

ମୁହୁଶ୍ଚ ସ୍ୱକନାଶ୍ଳେଷଃ ସୀତ୍କାରଶ୍ଚିତଲକ୍ଷିତମ୍ ।
ହୁଙ୍କାରେଂରଞ୍ଜୁସିତଂ ନାର୍ଯ୍ୟା ବୀର୍ଯ୍ୟସାନ୍ନିଧ୍ୟସୂଚକମ୍ ।।
(ରତି ରହସ୍ୟ)

ଚୁମ୍ବନର ସ୍ଥାନ ନିରୂପଣ:—

କୁଚୌ ନେତ୍ରେ ଲଲାଟେ ଚ
ଚୁମ୍ବନଂ ପରିକୀର୍ତ୍ତିତମ୍ ।।
(କାମସୂତ୍ର— ବାତ୍ସ୍ୟାୟନ)

ନେତ୍ରେ କଣ୍ଠେ କପୋଲେ ଚ, ହୃଦି ପାର୍ଶ୍ୱଦ୍ୱୟେଽପି ଚ
ଗ୍ରୀବାୟାଂ ନାଭିଦେଶେ ଚ କାମୀ ଚୁମ୍ବତି କାମିନୀମ୍ ।।
(ରତିମଞ୍ଜରୀ—ଜୟଦେବ)

ଶୂନ୍ୟଂ ବାସଗୃହଂ ବିଲୋକ୍ୟ ଶୟନାଦୁତ୍ଥାୟ କିଂଚିଚ୍ଛନୈ-
ର୍ନିଦ୍ରାବ୍ୟାଜମୁପାଗତସ୍ୟ ସୁଚିରଂ ନିର୍ବର୍ଣ୍ଣ୍ୟ ପତ୍ୟୁର୍ମୁଖମ୍ ।
ବିସ୍ରବ୍ଧଂ ପରିଚୁମ୍ବ୍ୟ ଜାତପୁଲକାମାଲୋକ୍ୟ ଗଣ୍ଡସ୍ଥଲୀଂ
ଲଜ୍ଜାନମ୍ରମୁଖୀ ପ୍ରିୟେଣ ହସତା ବାଲା ଚିରଂ ଚୁମ୍ବିତା ।।
(ଅମରୁଶତକ—କବି ଅମରୁ)

ସୁରତକାଳରେ ନୀବୀମୋକ୍ଷର ସାର୍ଥକତା: –

କାନ୍ତେ ତଳ୍ପମୁପାଗତେ ଶିଥିଳିତା ନୀବୀ ସ୍ୱୟଂ ବନ୍ଧନାତ୍—
ବାସୋ ବିଶ୍ଳଥମେଖଳାଗୁଣଧୃତଂ କିଞ୍ଚିନ୍ନିତମ୍ବେ ସ୍ଥିତମ୍ ।
ଏତାବତ୍ ସଖି ! ବେଦ୍ମି କେବଲମହଂ ତସ୍ୟାଙ୍ଗସଙ୍ଗେ ପୁନଃ
କୋଽସୌ କାସ୍ମି ରତଂ ଚ କୀଦୃଶମିତି ସ୍ୱଳ୍ପାପି ମେ ନ ସ୍ମୃତିଃ ।।
(ନାଟ୍ୟଶାସ୍ତ୍ର – ଭରତ)

ଅବିଦିତସୁଖଦୁଃଖଂ ନିର୍ଗୁଣଂ ବସ୍ତୁ କିଞ୍ଚିତ୍
ଜଡ଼ମତିରିହ କଶ୍ଚିତ୍ ମୋକ୍ଷ ଇତ୍ୟାଚଚକ୍ଷେ ।
ମମ ତୁ ମତମନଙ୍ଗସ୍ମେରତାରୁଣ୍ୟଘୂର୍ଣ୍ଣନ୍ –
ମଦକଲମଦିରାକ୍ଷୀନୀବିମୋକ୍ଷୋ ହି ମୋକ୍ଷଃ ।।
(ଶୃଙ୍ଗାରରସାଷ୍ଟକ—କାଳିଦାସ)

ଓଷ୍ଠାଗ୍ରଂ ସୁରତକ୍ଷଣେ ବିଚଳିତଃ କୂପୋଦରେ ମତ୍ସ୍ୟବତ୍ –
ଧମ୍ମିଲ୍ଲଃ କୁସୁମାକୁଲୋ ବିଗଳିତ ପ୍ରାପ୍ନୋତି ବନ୍ଧଂ ପୁନଃ ।
ପ୍ରଚ୍ଛନ୍ନୌ ବ୍ରଜତଃ ସ୍ତନୌ ପ୍ରକଟତାଂ ଶ୍ରୋଣୀତଟଂ ଦୃଶ୍ୟତେ
ନୀବୀ ଚ ସ୍ଖଳିତ ସ୍ଥିତାପି ସୁଦୃଢ଼ଂ କାମେଙ୍ଗିତେ ଘୋଷିତାମ୍ ।।
(ରତିରହସ୍ୟ)

ନାଭେର୍ମୂଲକୁଚୋଦରପ୍ରକଟନବ୍ୟାଜେନ ଯଦ୍ଦୋଃଯଷ୍ଟିତାଂ
ସାକାଙ୍‌କ୍ଷଂ ମୁହୁରୀକ୍ଷଣଂ ସ୍ଖଳତତା ନୀବୀନବନ୍ଧସ୍ୟ ଚ ।
କେଶଭ୍ରଂଶନସଂଯମୌ ଚ କର୍ମିଭୂର୍ମିତ୍ରାଃଦସନ୍ଦର୍ଶନୈଃ
ସୌଭାଗ୍ୟାଦଗୁଣପ୍ରଶସ୍ତିକଥନୈସ୍ତତ୍ସାନୁରାଗାଙ୍କିତମ୍ ॥

(ରସିକସର୍ବସ୍ୱ)

ମୋକ୍ଷ କଶଦଏ ବେଦ ଶରୀର
ମୋକ୍ଷ ଏ ଜବକ୍ତେ ଖ୍ୱାମୀ କର
ପୁରାଣ ଏ ବୋଲି ନ'କର ଡର
ପାଣିନି ବାକ୍ୟେ କରିବ ଇତର
ଜଡ଼ନ୍ଥନ୍ତ୍ର ଅତରେକେ
ପଢ଼ଛନ୍ତ ବାତ୍ସ୍ୟାୟନ ଶାସ୍ତ୍ର ଯେଉଁ ତଳ୍ପତାଙ୍କୀ-ଉପାସିକେ ॥

(ପ୍ରବନ୍ଧପୂର୍ଣ୍ଣଚନ୍ଦ୍ର—ଯଦୁମଣି)

ବରବର୍ଣ୍ଣୀ ନଖରେ ଭୂମି ଚରେ:—

ବରବର୍ଣ୍ଣୀ ନଖେ ଚରେନା ଧରଣୀ
ସେ ଚରରେ କଣ ନ ଆଏ ଖେପା
ସେ ଖ୍ୟାତି କଣ ସତରେ ନୀରବ
ପ୍ରକାଶ କରେ ନା ପ୍ରଣୟ-ଆଶା ॥

(ଶ୍ରୀକୃଷ୍ଣ – ଜୟକୃଷ୍ଣ ପଟ୍ଟନାୟକ)

ନାରିକେଳ ସହ କୁଚର ସାଦୃଶ୍ୟ :—

ଭଲ ଜାଣୁ ମଣି ରମଣୀରତନ ପକ୍ୱଚୂତ ଦେଇ ମୋ କର,
ମୋତେ ବୋଇଲା ଏହା ଚାଖ କର;
ମୁଁ ବୋଇଲି ସୁବାଳାକୁ ଜାଣିଥିବୁ ନାରିକେଳ ଚାଖିବାର
ରେ ମଧୁପ !
ମୋହ ଗତି ଜାଣି ଶିର ନୁଆଁଇ
ନାସା ପୁଡ଼ାକୁ ଅଳପ ଫୁଲାଇ
କେହୁ କାହା ବୋଲି ପାଳିବକି ଆଉ ବୋଇଲା ଗେହ୍ଲାଇ ହୋଇ
ରେ ମଧୁପ !

(ପ୍ରେମସୁଧାନିଧି—ଉପେନ୍ଦ୍ର ଭଞ୍ଜ)

ଲୀଳାବିକାଶିନୀ ଗଉରର ଗଉରର ଗଉରର ମରଏ ମଣିବ
ଲଳିତ ଗଉରୀ ଗଉରୀ ଗଉରୀ ଅନୁବରତରେ ଗୁଣିବ
କୋକିଳ, ଲଗୁଥିବ ତାର ମୋ ଚିତ୍ତ
ଲାବଣ୍ୟ ଅଧର ଗଉରର ଗଉରର ଗଉରର ହୋଇଥିବ ନୋହି ॥୨୮॥

ଅନ୍ୱୟ – ରେ କୋକିଳ, ମୋ ଲୀଳାବିକାଶିନୀ ମୋ ଗଉର (ଆଦର) ଓ ଗଉର (ସ୍ନେହ)କୁ ଗଉର (ଗୌରବ) ମନେ କରେ । ଲଳିତ (ସୁନ୍ଦର) ଗଉରୀ (ଗୋରଚନା) ଗଉରୀ (ଗଉରାଙ୍ଗୀ) ସର୍ବଦା ଗଉରୀ (ପାର୍ବତୀ)ଙ୍କୁ ଗୁଣିବ (ସ୍ମରଣ କରିବ) । ମୋ ଚିତ୍ତ ତାର ଲଗ୍ନ ଥିବ । ତାର ଲାବଣ୍ୟ ଅଧର ଗଉର (ସମ୍ମାନ ଏଠାରେ ପ୍ରଶଂସନୀୟ) ନ ହୋଇ ଗଉର (ଫିକା) ଓ ଗଉର (ଚେତନାଶୂନ୍ୟ) ହୋଇଥିବ ।

ଅର୍ଥ – ରେ କୋକିଳ, ସେ ଲୀଳାପ୍ରକାଶପ୍ରବୀଣା ରାଧା ମୋର୍ ଆଦର ଓ ସ୍ନେହକୁ ଗୌରବ ମନେ କରେ । ସେ ସୁନ୍ଦରୀ ଗୋରଚନା ଜିତ ଗୋରୀ ସ୍ୱର୍ଣ୍ଣାଙ୍ଗୀ ସର୍ବଦା ପାର୍ବତୀଙ୍କୁ ସ୍ମରଣ କରୁଥିବ । ତାର ଲଗ୍ନ ମୋ ଠାରେ ଥିବ । ତାର ସୁନ୍ଦର ଓ ପ୍ରଶଂସନୀୟ ବଦନ ବର୍ତ୍ତମାନ ବିରହଦୁଃଖରେ ପାଣ୍ଡୁର ଦେଖାଯାଉଥିବ ଓ ତାର ଚୈତନ୍ୟ ଲୋପ ହୋଇଥିବ ।

ରାଧା ଗୌରବର୍ଣ୍ଣା ଓ ସ୍ୱର୍ଣ୍ଣାଙ୍ଗୀ : –

ହିରଣ୍ମୟୀ ସାଲଲତେବ ଜଙ୍ଗମା
ଚ୍ୟୁତା ଦିବଃ ସ୍ଥାଣୁରିବାଽଚିରପ୍ରଭା ॥
(ଭଟ୍ଟିକାବ୍ୟ)

କିମିନ୍ଦୁଃ କିଂ ପଦ୍ମଂ କିମୁ ମୁକୁରବିମ୍ବଂ କିମୁ ମୁଖଂ
କିମବ୍ଜେ କିଂ ମୀନୌ କିମୁ ମଦନବାଣୌ କିମୁ ଦୃଶୌ ।
ଖଗୌ ବା ଗୁଚ୍ଛୌ ବା କନକକଲଶୌ ବା କିମୁ କୁଚୌ
ତଡିଦ୍ ବା ତାରା ବା କନକଲତିକା ବା କିମବଲା ॥
(ସୁଭାଷିତରତ୍ନଭାଣ୍ଡାଗାର)

ପ୍ରାଣବାନ୍ଧବୀ ହନେ ପ୍ରାଙ୍ଗଣ ପରେ
କର ଦେଇଣ ଥିଲ ଯୋଗହସ୍ତରେ
ଯେ ମୋ କନକଗୋସ୍ୱ
ଧନ୍ୟ ଧନ୍ୟ ତାହାର ଶୋଭାସ୍ୱରୂପ ॥
(କବିତା — ନୀଳକଣ୍ଠ ଭଞ୍ଜ)

ବିଶ୍ୱହୃକାନ୍ତ କି ଝଟକନ୍ତ କନକ ଅନାଇଲ
ବାନ ବଢ଼ାଇ ଅଗ୍ନିରେ ଦାହ୍ନ ଶିଲେ କଷାଇ ହେଲ ॥
(ବୈଦେହୀଶ ବିଳାସ – ଉପେନ୍ଦ୍ର ଭଞ୍ଜ)

ଲବଣୀ ଶିରୀଷରୁ କୋମଳ ନେଇ ଦେହେ
ବନ୍ଧ୍ୟ ହେମ ଚମ୍ପାକାନ୍ତ ହରକାନ୍ତ ଦେହେ ॥
(ରସିକହାରାବଳୀ—ଉପେନ୍ଦ୍ର ଭଞ୍ଜ)

ଉଷ୍ମ ଦେଲେ ପୀତାମ୍ବରେ ଉରୁସନ୍ଧିକ ହ୍ରନ୍ଧ
ପିନ୍ଧ କଟମ୍ବିନୀ ନବଢେ଼ ନୀବୀବନ୍ଧକୁ ବାନ୍ଧ ।
ଚୋର ହୋଇଲ ଚୋଖ ଦେହ ଆଲିଙ୍ଗନକୁ ପାଇ
ଧଡ଼ି ନ ଥିଲ ଶାଢ଼ୀରେ ପର ଦଶନ୍ତା ନାହିଁ ॥
(ଲାବଣ୍ୟବତୀ — ଉପେନ୍ଦ୍ର ଭଞ୍ଜ)

ସର୍ପପୁରେ ଯାଇ ପବଂତ କହିଲ ମସ୍ୱାକାତ ହେମ-ମନ୍ତ୍ରୀ
ସୁଗନ୍ଧବତୀ ସ୍ୱଇଚ୍ଛାରେ ଚଳିତ ପତ୍ରାବଳୀରେ କି ମାଧୁରୀ
ସଫୁଲ୍ଲ, ତହିଁ ପୁଷ୍ପ ଫଳ ଏତେକ
ସବେରୁହ ଚମ୍ପା କୁମୁଦ ପାଟଳୀ ନଅଳୀ ଶିରୀଷ ଅଶୋକ ।
ସଫଳ ଆମ୍ବ ତାଳମ୍ବ ବମ୍ବ ଦ୍ରାକ୍ଷା ଡୁମ୍ବୀ ନାରଙ୍ଗ ମାତୁଲିଙ୍ଗ
ସାରଙ୍ଗ ଖଞ୍ଜନ ଚକୋର ମୟୂର ହଂସ କପୋତ ଶୁକ ସଙ୍ଗ
ସ୍ୱରବେ, ମହା ଅଦ୍ଭୁତ କଥା ଏହୁ
ସପତଜାତ ଫୁଲ ଫଳ ଲଥକା ଏକା ଲତାକେ ଶୁଣା ନାହିଁ ॥
(ସୁଭଦ୍ରାପରିଣୟ—ଉପେନ୍ଦ୍ର ଭଞ୍ଜ)

ରସାଣିଲ ହାଟକ        ପଦ୍ମ କାନ୍ତ ଝଟକ
ଛବି କି କନକ ଅପସର ସରି ରେ,
ରଖିଲ ମନ ବମ୍ବାଧସ୍ତ ଧରି ରେ ॥
(ରସପଞ୍ଚକ – ଉପେନ୍ଦ୍ର ଭଞ୍ଜ)

ରାଧା ପରି ରାଧା ସିନାରେ ସଙ୍ଗାତ
ରାଧା ପରି ରାଧା ସିନା
ପ୍ରେମ ମାତରକେ ଅଛନ୍ତି ଯେତେକ
ସବେ ପିତଳ ସେ ସୁନା ॥
(ଗୋପାଳକୃଷ୍ଣ ପଦ୍ୟାବଳୀ)

ସହଜେ ସୁବର୍ଣ୍ଣ ଯୌବନ ହେଲା ଯୋଗ୍ୟ ରସାଣ
ରୂପାନ୍ତର ହେଲା ରୂପସୀ ଷଷ୍ଠ ଅମୋଘ ବାଣ ॥
(ଚନ୍ଦ୍ରଭାଗା – ରାଧାନାଥ ରାୟ)

ଉପ୍‌ସର ନନ୍ଦନ        ଏ ସୁନ୍ଦରୀ ବୃନ୍ଦେ
ଝଟକ-ହାଟକ-ଗୋରୀ
ଶୋଭାସ୍ୱର୍ଗପୁର –        ଦଶ ପ୍ରାପ୍ତ ହେଲେ
ସିନା ଏ ରାଜ-କିଶୋରୀ ॥
(ଯଯାତି—ରାଧାନାଥ ରାୟ)

ଭାବୁଥିଲେ ଲୋକେ        ଦେଖି ସେ ରୂପସୀ-
ମୌଳିମଣି-ରୂପ-ପ୍ରଭା
ଶୋଭା ସ୍ୱର୍ଣ୍ଣ ଗ୍ରନ୍ଥେ        ସତର୍କେ ବରଣ୍ଣ
ଉତାରଛି ଚାଳ ଏବା ॥
(ଶଶୀପ୍ରଭା – ଚନ୍ଦ୍ରମଣି ମହାନ୍ତି)

କନକ-ବରନୀ        କନକିତ ଅଙ୍ଗ
ସ୍ଫୁରି କନକର ପ୍ରଭା
କନକେ ମଣ୍ଡିତ        ହେଲା ପ୍ରାପ୍ତ ଦଶେ
ଅମର-ଅପୁର-ସଭା ॥
(ମୋହିନୀ – ଚନ୍ଦ୍ରମଣି ମହାନ୍ତି)

ରୂପେ ଥିଲ ରମ୍ଭା ସମ, ଗୌରକାନ୍ତ, ଖଞ୍ଜନନୟନା
କ୍ଷୀଣକଟି, କମ୍ବୁଗ୍ରୀବା, ତନ୍ୱୀ, ସୁଭ୍ରୂ, ସ୍ଥିରଚନ୍ଦ୍ରାନନା
ଶିରୀଷକୋମଳାଙ୍ଗୀ, ବନ୍ଧୁକପ୍ରଭା, ପକ୍ୱବିମ୍ବାଧରା
ଆଗୁଲ୍ଫଲମ୍ବିତକେଶା, ଗର୍ଭାଲସାମଲଗମନା ॥

(ଚୈତଣ୍ଯ ଲ – ଦରବୀକବ)

ବିରହିଣୀର ଅଙ୍ଗରେ ପାଣ୍ଡୁରତା:—

ନିଦ୍ରାପ୍ରବନ୍ଧାଦସ୍ୱମଧ୍ୟଶାମାନପ୍ରମାଦ୍ଭୁତପରହସ୍ତନେତ୍ରାଃ
ଶଚ୍ୟାସ୍ତିରଂ ପାଣ୍ଡୁକପୋଲଲମ୍ବାନ୍ ମନ୍ଦାରଶୂନ୍ୟାନଲକାଂଶ୍ଚକାର ॥

(ରଘୁବଂଶ – କାଳିଦାସ)

ତନୂନି ପାଣ୍ଡୂନି ସମାନ୍ତରଣି ମୁହୁର୍ମୁହୁର୍ଜୃମ୍ଭଣତତ୍ପରାଣି
ଅଙ୍ଗାନ୍ୟନଙ୍ଗଃ ପ୍ରମଦାଜନସ୍ୟ କରୋତି ଲାବଣ୍ୟସସମ୍ଭ୍ରମାଣି ॥

(ଋତୁସଂହାର—କାଳିଦାସ)

କ୍ଷାମକ୍ଷାମକପୋଲମାନନମୁରଃ କାଠିନ୍ୟମୁକ୍ତସ୍ତନଂ
ମଧ୍ୟଃ କ୍ଲାନ୍ତତରଃ ପ୍ରକାମବିନତାବଂସୌ ଛବିଃ ପାଣ୍ଡୁରା ।
ଶୋଚ୍ୟା ଚ ପ୍ରିୟଦର୍ଶନା ଚ ମଦନକ୍ଲିଷ୍ଟେୟମାଲକ୍ଷ୍ୟତେ
ପତ୍ରାଣାମିବ ଶୋଷଣେନ ମରୁତା ସ୍ପୃଷ୍ଟା ଲତା ମାଧବୀ ॥

(ଅଭିଜ୍ଞାନ ଶାକୁନ୍ତଳ—କାଳିଦାସ)

ନୂନଂ ତସ୍ୟାଃ ପ୍ରବଲରୁଦିତୋଚ୍ଛୂନନେତ୍ରଂ ପ୍ରିୟାୟାଃ
ନିଃଶ୍ୱାସାନାମଶିଶିରତୟା ଭିନ୍ନବର୍ଣ୍ଣାଧରୋଷ୍ଠମ୍ ॥

(ମେଘଦୂତ—କାଳିଦାସ)

କଂ କୃପାପି ତବ ନାସ୍ତି କାନ୍ତ୍ୟା
ପାଣ୍ଡୁଗଣ୍ଡପତିତାଲକାନ୍ତୟା ।
ଶୋକସାଗରଜଳେଽଦ୍ୟ ପାତିତାମ୍
ତ୍ୱଦ୍ଗୁଣସ୍ମରଣମେବ ପାତି ତାମ୍ ॥

(ଯମକକାବ୍ୟ—ଘଟକର୍ପର)

ଦ୍ରୁମବସରବଶୀର୍ଣ୍ଣାମ୍ଭୋଜରୁକ୍ଷାନନଶ୍ରୀଃ
ସ୍ମରମରୁଦପରଜ୍ୟାଦ୍‌ବନ୍ଧୁଜୀବୋପମୋଷ୍ଠୀ ।

ଅଘହର ଶରଦର୍କୋଗ୍ରମ୍ଳପିତେନ୍ଦୀବରାକ୍ଷୀ
ତବ ବିରହବିପତ୍ତ୍ୟା ଗ୍ଲାପିତାସୀଦ୍ ବିଶାଖା ॥
(ଉଜ୍ଜ୍ୱଳନୀଳମଣି – ରୂପଗୋସ୍ୱାମୀ)

ଆବିର୍ଭୂତା ଯଦବଧି ମଧୁସ୍ୟନ୍ଦିନୀ ନନ୍ଦସୂନୋଃ
କାନ୍ତିଃ କାଚିନ୍ନିଖିଳନୟନାକର୍ଷଣେ କର୍ମଠଜ୍ଞା ।
ଶ୍ୱାସୋ ଦୀର୍ଘସ୍ତଦବଧି ମୁଖେ ପାଣ୍ଡିମା ଗଣ୍ଡଯୁଗ୍ମେ
ଶୂନ୍ୟା ବୃତ୍ତିଃ କୁଳମୃଗଦୃଶାଂ ଚେତସି ପ୍ରାଦୁରାସୀତ୍ ॥
(ରସଗଙ୍ଗାଧର—ପଣ୍ଡିତରାଜ ଜଗନ୍ନାଥ)

ଦରଦଳିତହରିଦ୍ରାଗ୍ରନ୍ଥିଗୌରେ ଶରୀରେ
ସ୍ଫୁରତି ବିରହଜନ୍ମା କୋଽପ୍ୟୟଂ ପାଣ୍ଡୁଭାବଃ ।
ବଳତି ସଖି ହି ଯସ୍ମିନ୍ ସାମ୍ୟମାବର୍ତ୍ତି ହେମ୍ନା
ରଜତମିବ ମୃଗାକ୍ଷ୍ୟାଃ କଳ୍ପିତାନ୍ୟଙ୍ଗକାନି ॥
(ସୁଭାଷିତ – ରତ୍ନଭାଣ୍ଡାଗାର)

କୃଷ୍ଣବିରହଜ୍ୱରେ କେ ଦେହ କାଶ ପାଣ୍ଡୁର କରି
କେଶବସନ ମଳିନ ଦୀନ ମନରେ ଅଛୁ ଧରି ।
କରି ଦୂଷଣ ଅଙ୍ଗଭୂଷଣ ବହଇ ନାହିଁ ଅଙ୍ଗେ
କୁରଙ୍ଗୀ ପ୍ରାୟେ ସ୍ଫୁରଇ ଭୟେ ପାଇବାକୁ ଅନଙ୍ଗେ ॥
(ରସକଲ୍ଲୋଳ—ଦୀନକୃଷ୍ଣ ଦାସ)

ମମ ଧନର ଏସନ ପରସନ ଚଞ୍ଚଳ କର ଦରଶନ
ଚଳ ତଳପ କରଣ ହୃତ ସତ କଜଳସଜଳ ନୟନ
ଜଳଦ ! ସତ ଏ ଯଶ ଅରଜନ
ଦହ୍ନ କନକ ଚହ୍ନକ ବଦନର ରଜତ ସମ ଅଯତନ ॥
(ଅବନାରସତରଙ୍ଗ – ଉପେନ୍ଦ୍ର ଭଞ୍ଜ)

ଅନେକ ଦହ୍ନକ କନକ ଗଢ଼ଣ ତନୁ ଧୂସର ଦର୍ଶିଲ ନ,
ରସାଳସା ରସା ଦରପଣ ଦଶ ଦରପଣରୁ ରସିଲ ନ,
ନବନାଗରୀ; ଶିବ ଶିବ ତ ଘୋଷିଲ ନ,
ଗିରିଦରୀ ସବ ପୁରୀ କ ବିସ୍ମିତ କରକେ ମସ୍ତ ଚପିଲ ନ,
(ବିଦଗ୍ଧଚିନ୍ତାମଣି – ଅଭିମନ୍ୟୁ)

ଆହା କ ବବଶା          ଖଞ୍ଜରୀଟ ଦୃଶା
ଅବଲା ମଳନା କୃଶା
ଢବସ ପାଣ୍ଡୁର          ଚନ୍ଦ୍ରକଲା କବା
କୁହେଳକାମୟ ଉଷା ॥
(ଇନ୍ଦୁମଗ—ଅପର୍ଣ୍ଣ   ।

ଏକେତ ବସନ୍ତ ପ୍ରକୋପ ଝାଣ
ତା ସଙ୍ଗେ ପୁଣି ଏ ମଦନ ବାଣ
ଦେଖ ଦେଖ ପ୍ରମଦାର ଅବସ୍ଥା
ପାଣ୍ଡୁବର୍ଣ୍ଣ ଅଙ୍ଗ ଲତକା ତଥା
ଅଲସେ ମାରଛ ହ୍ଵାଇ,
ଫୁଟି ଉଠେ ଅଙ୍ଗ ଲବଣ୍ୟ ତରଙ୍ଗ ସସ୍ବେଦରେ ଯଥା ଗ୍ରୁଇ ॥
(ଗ୍ରୃଙ୍ଗାର—ଦରଦୀକବ)

ଧୂସରଖଣ୍ଡେ ପ୍ରିୟାର ମଣ୍ଡେ ଅଳକାରୁକ୍ଷ କେଶ
ତେବେ ହେଁ କାନ୍ତ ନୋହୁଛ ଭ୍ରାନ୍ତ ନାହିଁକ ଦୃଷ୍ଟି ଲେଶ
ଶୋକ-ଅର୍ଣ୍ଣବ-ବାର-
ମର୍କ୍ଷିତା ତାକୁ ରକ୍ଷା କରଛୁ ତୁମ୍ଭ ପୁଣ୍ଯାବଳୀ ॥
(ଅଞ୍ଜଳ—ଦରଦୀକବ)

**Fair was the morn,**
**When the fair queen of love,**
**Paler for sorrow than**
**Her milk-white dove.**
**(The passionate pilgrim-William Shakespeare)**

ବ୍ୟଥିତ ହୋଇ ଗ୍ରହୁଁଥିବ ହରଣ ହରଣ ହରଣ-ନୟନା
ବାନ୍ଧବ ବଶିଖ ବଶିଖ କୁମୁଦ କୁମୁଦ ଶର ବେଷ ସେନା
କୋକଳ, ବାଣୀ ନ ଶୁଭିବ ତାହାର
ବଡ଼ ଦୁଃଖେ ରହୁଥିବ ବନ୍ଧୁ ଜୀବ ବନ୍ଧୁଜୀବକତଅଧର। ।୨୪।

ଅନ୍ୱୟ—ରେ କୋକିଲ, ସେ ହରିଣ (ମୃଗ) ନୟନା ବ୍ୟଥା ପାଇ ହରିଣ (ସୂର୍ଯ୍ୟ) ଓ ହରିଣ (ଶିବଙ୍କୁ) ସ୍ମରୁଥିବ । ଷଶିଖ (ଶିଖାରହିତ ଅର୍ଥାତ୍ ଅଗ୍ନିମୟ ନ ହୋଇ କୋମଳ) ଷଶିଖ (ଶର) କୁମୁଦ (କଇଁ)—କନ୍ଦର୍ପର ଫୁଲଶର ବେଗରେ ବାଜିଲେ ତାକୁ କୁମୁଦ (ସର୍ପ) ପରି ଲାଗିବ । ତାର ଚେତନା ଲୋପ ହୋଇଥିବାରୁ ଆଉ ତା କଥା ଶୁଭିବ ନାହିଁ । ସେ ବନ୍ଧୁଜୀବ (ବନ୍ଧୁଲିଫୁଲ) ଜିତ ଅଧରା ବନ୍ଧୁ (ବାନ୍ଧବୀ)ର ଜୀବ (ପ୍ରାଣ) ବଡ଼ ଦୁଃଖରେ ଥିବ ।

ଅର୍ଥ—ରେ କୋକିଲ, ସେ ମୃଗନୟନା କାମତାପନାଶାର୍ଥେ ସର୍ବଦା ସୂର୍ଯ୍ୟଙ୍କୁ (ହୃଦୟରେ କାମ ତାପ ଦ୍ୱାରା) ଓ ଶିବଙ୍କୁ (କନ୍ଦର୍ପଜ୍ୱାଳାରୁ ରକ୍ଷା ପାଇବା ଲାଗି) ଚିନ୍ତା କରୁଥିବ । ଫୁଲଶରଧାରୀ କନ୍ଦର୍ପର ନୀଳୋତ୍ପଳ ଶର ତାକୁ ସର୍ପ ପରି ବୋଧ ହେବ । ତାର ଚୈତନ୍ୟ ଲୋପ ପାଇଥିବାରୁ ତା କଥା ଆଉ ଶୁଭିବ ନାହିଁ । ସେ ବନ୍ଧୁଲିଫୁଲଜିଣାଅଧରା ବାନ୍ଧବୀର ପ୍ରାଣ ବଡ଼ ଦୁଃଖରେ ଥିବ ।

ବିରହିଣୀର ଚୈତନ୍ୟ ଲୋପ:—

ଜ୍ଞାନବିଜ୍ଞାନ ବିଧିବଶେ ତାହା ବୃଥାସ୍ୱା ଗୃହୀ
ମୂର୍ଚ୍ଛିଲି ଶ୍ରୁତିକ ଡାକିଲ କିଛି ଚେତନା ନାହିଁ ।
(କୋଟିବ୍ରହ୍ମାଣ୍ଡସୁନ୍ଦରୀ—ଉପେନ୍ଦ୍ର ଭଞ୍ଜ)

କୃଷ୍ଣର ଦେହେ ଦେଇ ମନ । କ୍ଷଣ କ୍ଷଣକେ ଅଚେତନ ॥
ସହି ନ ପାରି କାମଶର । କେହ୍ନେ ଲୋଚନ କଲା ସ୍ଥିର ॥
(ଶ୍ରୀମଦ୍‌ଭାଗବତ—ଜଗନ୍ନାଥ ଦାସ)

ବିରହିଣୀର ଦୁଃଖ ସ୍ମରଣକରି ବିରହୀର ଚିନ୍ତା:—

ପ୍ରସ୍ଥାନଂ ବଲୟୈଃକୃତଂ ପ୍ରିୟସଖୈରସ୍ରୈରଜସ୍ରଂ ଗତଂ
ଧୃତ୍ୟା ନ କ୍ଷଣମାସିତଂ ବ୍ୟବସିତଂ ଚିତ୍ତେନ ଗନ୍ତୁଂ ପୁରଃ ।
ଯାତୁଂ ନିଶ୍ଚିତଚେତସି ପ୍ରିୟତମେ ସର୍ବେ ସମଂ ପ୍ରସ୍ଥିତାଃ
ଗନ୍ତବ୍ୟେ ସତି ଜୀବିତ ପ୍ରିୟସୁହୃତ୍ସାର୍ଥଃ କିମୁ ତ୍ୟଜ୍ୟତେ ।
(ଅମରୁ ଶତକ—କବି ଅମରୁ)

ବାଳା ଦୁଃଖେ ଦୁଃଖୀ ବାଳା ସୁଖେ ସୁଖୀ
ସମସ୍ତ ପ୍ରକାରେ ମୁହିଁ
ମୋ ଆୟୁଷ ଘେନ ଜୀଇ ଥାଉ ପଛେ
ଶରଦ-ଚନ୍ଦ୍ରମା-ମୁହିଁ ॥
(ଲାବଣ୍ୟବତୀ—ଉପେନ୍ଦ୍ର ଭଞ୍ଜ)

ଜାଣିଲି କେବଳ ମୋତେ ଏକା ପୀଡ଼ା
ଦେଉନାହିଁ ଫୁଲଶର
ସେହି ଫୁଲଶରେ ମୋର ପ୍ରାଣେଶ୍ୱରୀ
ଚନ୍ଦ୍ରକୁ କରେ ଜର୍ଜର ॥

ଶକଳ କରବ ଯମକ ଯମକ ଯମକ ଅଳସୁତ ସ୍ୱରେ
ଶୋଇ ନ ଥିବ ସେ ପଲକେ ପଲକେ ମୋର କେଳିପୁଣି ମନରେ
କୋକିଳ, ଶଶିକଳା ପ୍ରାପ୍ତ ହେବନି
ଶ୍ରବଣେ ପୁଣି ସେ ଅଳପକ ଅଳପକ ଅଳପକ ମୋ ଧମା ।୩୦।

ଅନ୍ୱୟ – ରେ କୋକିଳ, ଅଳସୁତ (ଭ୍ରମର ଶିଶୁ)ର ଯମକ (ଆଡ଼ମ୍ବର) ଯମକ (କର୍ଣ୍ଣସୁଖକର) ସ୍ୱରରେ ସେ ଶକଳ (ବାସନା)କୁ ଯମକ (ସଂଯମ) କରିବ । ସେ ମୋ କେଳି ପୁଣି (ମନେ ପକାଇ) ପଲକେ (ମୁହୂର୍ତ୍ତେ) ପଲକେ (ପଲଙ୍କରେ) ଶୋଇ ନ ଥିବ । କର୍ଣ୍ଣରେ ସେ ମୋର ବଂଶୀନାଦ ଅଳପକ (ଧୀରେ) ଅଳପକ (ଅଳ୍ପମାତ୍ରାରେ) ଶୁଣି ବିରହଚନ୍ତାରେ ଶଶିକଳା ପ୍ରାପ୍ତ, କ୍ଷୀଣ ହେବଣି ।

ଅର୍ଥ – ରେ କୋକିଳ, ଭ୍ରମରର ଆଡ଼ମ୍ବରପୂର୍ଣ୍ଣ ଓ କର୍ଣ୍ଣସୁଖକର ସ୍ୱରକୁ ଶୁଣି ସେ ତାର କାମପ୍ରବୃତ୍ତିକୁ ସଂଯମ କରିବ । ସେ ମୋର କଥା ଚିନ୍ତା କରି ମୁହୂର୍ତ୍ତେ ହେଲେ ପଲଙ୍କରେ ଶୋଇ ନ ଥିବ । କର୍ଣ୍ଣରେ ସେ ମୋର ମୃଦୁ ଓ ଧୀର ବଂଶୀସ୍ୱନକୁ ଅଳ୍ପ ମାତ୍ର ଶୁଣି ମୋ ଚିନ୍ତାରେ ଚନ୍ଦ୍ରକଳା ପରି କ୍ଷୀଣ ହେବଣି ॥

ଭ୍ରମର ଗୁଞ୍ଜନରେ ବିରହିଣୀର ଅବସ୍ଥା: –

ମତ୍ତଦ୍ୱିରେଫ-ପରିଚୁମ୍ବିତ-ଚାରୁପୁଷ୍ପା
ମନ୍ଦାନିଲାକୁଳିତ-ନମ୍ର-ମୃଦୁ-ପ୍ରବାଳାଃ
କୁର୍ବନ୍ତି କାମିମନସାଂ ସହସୋତ୍ସୁକତ୍ୱଂ
ଚୂତାଭିରାମକଳିକାଃ ସମବେକ୍ଷ୍ୟମାଣାଃ ।
(ଋତୁସଂହାର— କାଳିଦାସ)

କୁସୁମିତ କଦମ୍ବ ଘନ ସୁପକ୍ୱ ଚୂତର
କୁସୁମ କକରେ ବିହରନ୍ତି ମଧୁକର ।
ଦେଖିଲେ ସକଳ ଶରୀର ଯିବ ଫାଟି
ସଂସାର ଜନମନ୍ତେ ଚଳଇ କଳା ଦୃଷ୍ଟି ॥
(ମହାଭାରତ—ସାରଳାଦାସ)

ଗୁଞ୍ଜିଲେ ଅଳି ଅଳି                ମାଳତୀ ଆଳି ଆଳି
ଦମ୍ଭକୁ ନ ସମ୍ଭାଳି ଭଳି
ଝିନ କଣ୍ଠାଳ ଟାଳ               ପ୍ରେମକୁଣଳୀ ଶଳୀ
ମୁଖେ ଦେବ ବଚନ କାଳି
ହେ ଜଳଧର !
ହେଲି ବିରହ ବଳି ବଳି
ଥିବେ ସଜନୀ ପାଳି ପାଳି
ସେଵ ମୁଁ ଶୂଳୀ ଶୂଳୀ          ଲଭି ରସାଳୀ ଶାଳୀ
ଦେଲ ଏ ଦୁଃଖ ଭଳି ଭଳି ॥
(ରସିକ ହାରାବଳୀ —ଉପେନ୍ଦ୍ର ଭଞ୍ଜ)

ନନ୍ଦା କରୁଥାଇ ଫୁଲ ଭ୍ରମର ପ୍ରୀତିକି
ମୁଁ ବୋଲଇ ଯାଉଁ ଯେବେ ଶ୍ରବଣ କରନ୍ତି ॥
(ରସଲେଖା—ଉପେନ୍ଦ୍ର ଭଞ୍ଜ)

ମଧୁପ ଝଙ୍କାର ଶ୍ରବଣେ ଶୁଣି
ମର ମର ବୋଲେ କେଉଁ ରମଣୀ

ମଧୁପ ଶଠ ସ୍ୱଭାବ ଦେଖାଉ
ମହ୍ୱା କ୍ରନ୍ଦିଲ ପଣ ପୋଢ଼ିଯାଉ
ମଦ୍ବୁଚ୍ଛ ଗରଜ
ମର୍ଦ୍ଦିବୁ ମାନ ଉପାସ୍ତ ସରଜ ॥
(ବିଦଗ୍ଧ ଚିନ୍ତାମଣି—ଅଭିମନ୍ୟୁ)

ମୁକୁଳେ ସହକାର ସୁଶୋଭନ
ମଞ୍ଜୁଅଳି ଚୁମ୍ବେ ତାର ବଦନ
ମୃଦୁ ମନ୍ଦବାତେ ପଲ୍ଲବରାଜ
ଦୋଳନ୍ତି କେଯନ ଦେଖ ଗୋ ଆଜ
ଦେଖି ଏ ଶୋଭା ସମ୍ପଦ,
କାମିନୀ ହୃଦୟେ ଜାଗେ କାମବୃତ୍ତି
ଆସଇ ତାର ଷପଦ ॥
(ଋତୁ ସହ୍ୱାର—ଦରଦୀ କବି)

ଫୁଲ ଖିଲେ ଲୁମୀ ନର୍ଗିନ ଡୋଲେ
ବେସୁଧ ଭଁବରା କ୍ୟା ବୋଲେ ?
ଗୁନ୍ ଗୁନ୍ ଗୁନ୍,
ପ୍ୟାର କା ଗୀତ ନ ଭୁଲ
ମୈଁ ଭଁବରା ତୁ ଫୁଲ ॥
(ଉର୍ଦ୍ଦୁ କେ ପ୍ରେମଗୀତ – ଅବଦୁଲ ମଜିଦ୍ ଭଟ୍ଟୀ)

ବଂଶୀଧ୍ୱନି ଶ୍ରବଣରେ ବିରହିଣୀ ରାଧାର ଅବସ୍ଥା :—
ଦୃଷ୍ଟିଂ ନିଧାୟ ପୁରଖାକୁଞ୍ଜରମ୍ଭୁବୀଥ୍ୟାଂ
କୃଷ୍ଣେତି ବର୍ଣ୍ଣଯୁଗଲାଭ୍ୟସେନ ରସଜ୍ଞାମ୍ ।
ଶୁଶ୍ରୁ ପଣେ ମୁରଳନାଃସ୍ୱନ ତସଃ କର୍ଣ୍ଣୌ
ତନ୍ତ୍ରଂ ସୁଖେ ତବ ନସ୍ତ୍ୟାହ୍ୱରଦ୍ୟ ରାଧା ॥
(ଉଜ୍ଜ୍ୱଳନୀଳମଣି—ରୂପଗୋସ୍ୱାମୀ)

ଗୋପୀଏ ଶୁଣି ବେଣୁ ଗୀତ
ଅନଙ୍ଗ ବାଣରେ ମୂର୍ଚ୍ଛିତ ॥
(ଶ୍ରୀମଦ୍ଭାଗବତ – ଜଗନ୍ନାଥ ଦାସ)

ବଂଶୀ ସେ ଫୁଲ ବୃନ୍ଦାବନେ କଳ ବଇଁଶୀର ଧ୍ୱନ
ବୃନ୍ଦ ଥିଲା କେହ୍ନୁ ଏଡ଼େ ପିଶୁନ ॥

(ବାସୁଦେବ ବଳାସ—ନୃସିଂହ ପଟ୍ଟନାୟକ)

ଶୋଣ ଅରୁଣ ଅଧରେ ବେଣୁ ଲଗାଇ
ଶୃଙ୍ଗାରେ ବାଇଲେ ନାନା ଭଙ୍ଗୀ ଲଗାଇ ।
ଶ୍ରବଣ ମାତ୍ରେ ସକଳ ଗୋପାଳବାଳା
ଶମ୍ପା ସମ ଗୃହୁଁ ଗୃହୁଁ ହେଲେ ତରଳା ॥

(ଶ୍ୟାମରସୋତ୍ସବ – ବ୍ରଜନାଥ ବଡ଼ଜେନା)

ଧୀର ଧୀର କର ବେଣୁ ବାଉଛୁ
ସବନାଗ୍ରମନ ମାନ ମୋହୁଛୁ ॥

(ଗୋପୀଶିକ୍ଷା—ଦନାଇ ଦାସ)

ପ୍ରିୟ ଆଳି !
ଶୁଭୁଛୁ ମୁରଲୀ କାକଳି ।
ଶୁଣି ଏ ନନଦ କମ୍ପୁଛୁ ମୋ ହୃଦ
ଆଉ ନ ପାରେ ସମ୍ଭାଳି ॥

(ବସନ୍ତରହାସ - କିଶୋରଚନ୍ଦ୍ର ରାଜେନ୍ଦ୍ରଦେବ )

ମୋହନ କୀ ମୁରଲିୟା ବାଜେ
ଦୂନ ଠେସ କଝାପେ ମୋର ଲଗେ ॥
ଦୂର କୋଇ ମୁରଲୀ କୀ ଧୂନ ପର ଗୀତ ସୁନାକେ ଗାୟେ
ଜାନେବାଲେ ସ୍ୱାଦମେଁ ଡେଖର ନାଂଦ ନ ମୁଝକୋ ଆୟେ
ଜବ ଚୈନସେ ଦୁନିଆ ସୋୟେ
ଏକ ବିରହ କା ମନ ମୋର ଜାଗେ ॥

(ମେଲା ଚଳଚ୍ଚିତ୍ର – ଶକୀଲ ବାଦୟୁନୀ)

ବିରହିଣୀର ଅଙ୍ଗକୃଶତା:—

ଅଥ ମଦନବଧୂରୁପପ୍ଲବାନ୍ତଂ
ବ୍ୟସନକୃଶା ପରିପାଲୟାମ୍ବଭୂବ ।
ଶଶିନ ଇବ ଦିବା ତନସ୍ୟ ଲେଖା
କିରଣ-ପରିକ୍ଷୟ-ଧୂସରା ପ୍ରଦୋଷମ୍ ॥

(କୁମାରସମ୍ଭବ—କାଳିଦାସ)

ଶଙ୍କରଂ କ୍ଷାମଂ ସ୍ୟାଦସିତ ଦର୍ପି ତାଲଙ୍କନ ସୂଚେ
ଭବନ୍ତ୍ୟାସ୍ତ୍ରଂ ଚକ୍ଷୁ କ୍ଷଣମପି ନ ଯା ଦୃଶ୍ୟତ ଇତ
ତସ୍ୟା ସାରଙ୍ଗାକ୍ଷ୍ୟା ଭ୍ରମସି ନ କଦାଚତ୍ ବିରହିତଂ
ପ୍ରସକ୍ତେ ନବାଣେ ହୃଦୟ ! ପରିତାପଂ ବ୍ରଜସି କମ୍ ।।

(ମାଳବିକାଗ୍ନି ମିତ୍ର – କାଳିଦାସ)

ବିଚ୍ଛେଦେ ତେ ମୁଖରେ । ପାଣ୍ଡୁ ପ୍ରକାଶା କୃଶାଙ୍ଗୀ
ମ୍ଳାନଚ୍ଛାୟଂ ଦୁକୂଲଂ ନ ଭ୍ରାଜତେ ବିଭ୍ରତ ସା
ସୁଧାମ୍ଭୋଦସ୍ୟ ଗର୍ଭେ ଲୀନା ଯଥା ଚନ୍ଦ୍ରଲେଖା
କଷ୍ଟାତ୍ତ୍ୱା ତ୍ୱାଂ ସ୍ମରନ୍ତୀ ଧତ୍ତେ ଧ୍ରୁବଂ ଜୀବଯୋଗ୍ୟମ୍ ।।

(ଛନ୍ଦୋମଞ୍ଜରୀ—ଗଙ୍ଗାଦାସ)

କେଉଁ ନାଗରୀ ନାଗରକୁ ଭାଳ
ହସ୍ତରୁ ବଳୟ ପଡ଼ୁଛି ଗଳ
କଟି ମେଖଳା ଶିଥିଳେ ନ ରହେ
ବିଚ୍ଛେଦ ଦହନ ଅଙ୍ଗ କି ଦହେ
ତଳେ ଶୋଇ ନ ହଅଇ
ଝଞ୍ଜାବାତ ବେଳେ ଉଡ଼ିଯିବ ନା କି
ସଖୀ ଏମନ୍ତ ଭାବଇ ।।

(ରସମୁକ୍ତାବଳୀ—ଗଦାଧର ନାରାୟଣ ଭଞ୍ଜଦେବ)

ଅନ୍ତର୍ଗତ ଅଗ୍ନି ଶିଖା ସନ୍ତାପରେ
ଚନ୍ଦନ ତରୁ ସମାନ
ବିରହେ ବଧୂର କୃଶ କଳେବର
ହୋଇଥିଲା ମ୍ରିୟମାଣ ।।

(କାଦମ୍ବରୀ—ବଳଭଦ୍ର ଦେବ )

ସ୍ନେହୁଁ ଆକାଶବାଣୀ ଶୁଣି ସେ ତରୁଣୀ କୁମାର ଗଲେ ଯେଉଁ ଦିନୁ
ନୃପକୁମାରୀ ଅତି ସୁକୁମାରୀ ଝୁରି ଝୁରି କ୍ଷୀଣ ତା ତନୁ
ସୁନ୍ଦରୀ, ଶୋକ ତା କହିବା ନ ଯାଇ
ନୟନୁଁ ନୀର ବସନ୍ଧରୀ କରିଣ କୁଚଶମ୍ଭୁରେ ବରଷଇ ।।

(ଶଶିସେଣା—ପ୍ରତାପ ରାୟ)

ଫୋଟକା ହେଉଛି　　　ଶ୍ରୀ ଅଙ୍ଗେ ସିଞ୍ଚିଲେ
କର୍ପୂର ଚନ୍ଦନ ବାରି
ଫୁଙ୍କିଦେଲେ ଉଡ଼ି　　　ଦିବା ପର ପଡ଼ି
ଅଛନ୍ତି ତନୁ-ବଲ୍ଲରୀ ॥
(କିଶୋର ଚନ୍ଦ୍ରାନନଚମ୍ପୂ — କବିସୂର୍ଯ୍ୟ)

ସିଞ୍ଚୁଥିବ ଏବେ ପୁଷ୍କର ପୁଷ୍କର ପୁଷ୍କର ତାହାର ସଜନୀ
ସଜନୀ ଧରିଥିବ ତୁଣ୍ଡେ ପୁଷ୍କର ପୁଷ୍କର ପୁଷ୍କର-ଗମନୀ
କୋକିଳ, ଶଶୀଆନନୀ ହେଲା ଦୁଃଖୀ
ଶୀର୍ଣ୍ଣ ହୋଇଥିବ ଅନାଇ ପୁଷ୍କର, ପୁଷ୍କର ଲୋଡ଼ୁଥିବ ସଖୀ । ୩୧ ।

**ଅନ୍ୱୟ** – ରେ କୋକିଳ ତାର ସହଚରୀ ତା ଉପରେ ପୁଷ୍କର (ପଦ୍ମ) ପୁଷ୍କର (ପଦ୍ମପାଖୁଡ଼ା) ଓ ପୁଷ୍କର (ଜଳ) ସିଞ୍ଚୁଥିବେ । ସେ ପୁଷ୍କର (ଗଜ) ଗମନୀ ମୁଖରେ ପୁଷ୍କର (ଶିବ) ଓ ପୁଷ୍କର (ସୂର୍ଯ୍ୟ)ଙ୍କୁ ଘୋଷୁଥିବ । ସେ ଶଶୀ ଆନନା ଦୁଃଖିତା ହେଲା । ସେ ପୁଷ୍କର (ସୂର୍ଯ୍ୟ)ଙ୍କୁ ଚାହିଁ ଶୀର୍ଣ୍ଣା ହୋଇ ପୁଷ୍କର (ସଂଯୋଗ ବା ମିଳନ) ଲୋଡୁଥିବ ।

**ଅର୍ଥ**—ରେ କୋକିଳ, ତାର ସହଚରୀମାନେ ତାର ବିରହତାପ ନାଶାର୍ଥେ ତା ଦେହରେ ପଦ୍ମ, ପଦ୍ମ ପାଖୁଡ଼ା ଓ ଜଳ ପକାଉଥିବେ । ସେ ଗଜଗମନା ସର୍ବଦା ଶିବଙ୍କୁ (କାମ ତାପ ଉପଶମନ ଲାଗି) ଓ ସୂର୍ଯ୍ୟଙ୍କୁ (ବିରହ ରଜନୀ ବ୍ୟତୀତ କରିବା ଲାଗି) ଜପୁଥିବ । ଚନ୍ଦ୍ରବଦନା ବର୍ତ୍ତମାନ ଦୁଃଖ ଅନୁଭବ କରୁଥିବ । ସୂର୍ଯ୍ୟଙ୍କୁ ଦେଖି ବ୍ୟଥିତା ହୋଇ ସେ ମୋର ମିଳନ ଇଚ୍ଛା କରୁଥିବ ।

ବିରହବେଦନା ଉପଶମ ଲାଗି ପଦ୍ମ, ପଦ୍ମପାଖୁଡ଼ା ଓ ଜଳର ଆବଶ୍ୟକତା ଓ ସହଚରୀମାନଙ୍କ ଉପଚାର:—

ଏବଂବିଧାୟାଂ ଚ ତସ୍ୟୈକଦେଶେ ସଖୀକଦମ୍ବପରିବୃତାମ୍, ଅଶେଷ-ସନ୍ତାପାପହାବାସମେବ ଭଗବତୀଂ ଗଙ୍ଗାଂ ହିମବତୋ ଗୁହାଚଲଗତାମ୍, କୁଲ୍ୟାଭ୍ରମିଭ୍ରମିତେନ କର୍ପୂରରସସ୍ରୋତସା କୃତପରିବେଷାୟାଂ ମୃଣାଲଦଣ୍ଡ-ମଣ୍ଡପିକାୟାସ୍ତଲେ କୁସୁମଶୟନମଧିଶୟାନାମ୍, ହାରସଙ୍ଗଦକାଞ୍ଚୀପୁରସନା-

ନୂପୁରୈର୍ମୃଣାଳମୟୈର୍ନିଗଡୈରିବଘଟିତାମୀର୍ଷ୍ୟୟା ମନ୍ମଥେନ, ଚନ୍ଦନ-
ଧବଳେ ମୃତ୍ସ୍ନାମିବ ଲଲାଟେ ଶଶଲାଞ୍ଛନେନ, ବାଷ୍ପବାରିବାଦ୍ଧମୀଚମ୍ମୁଦ୍ରିତାମିବ
ଚକ୍ଷୁଷି ବରୁଣେନ, ବର୍ତ୍ତିତନାଶ୍ୱାସ ମରୁଦସ୍ତାମିବ ମୁଖେ ମାତରିଶ୍ୱନା,
ସନ୍ତାପପ୍ରତପ୍ତେସ୍ୱଧାପିତାମିବାଙ୍ଗେଷ୍ୱନଙ୍ଗେନ, କନ୍ଦର୍ପଦାହଦୀପିତେ ଗୃହୀତା-
ମେବ ହୃଦୟେ ହୁତଭୁଜା, ସ୍ୱେଦଜଳ ପରିଷୁକ୍ତାମିବ ବପୁଷି ଜଳେନ,
ଦୈବତୈରପି ବିଲୁପ୍ୟମାନସୌଭାଗ୍ୟାମିବ ସର୍ବଶଃ, ହୃଦୟେନ ସହ
ପ୍ରିୟତମସମୀପୋପଗତୈରଙ୍ଗୈରୁପଜନିତଦୌର୍ବଲ୍ୟାମ୍, ଆଶ୍ୟାନଚନ୍ଦନ-
ପାଣ୍ଡୁରଂ ଚ ରୋମାଞ୍ଚମନବରତହାରସ୍ପର୍ଶଲଗ୍ନଂ ମୁକ୍ତାଫଳ କିରଣ
ପୁଞ୍ଜମୁଦ୍ବହନ୍ତୀଂ ସ୍ୱେଦସୀକରିଣୀଂ ଚ କପୋଳପାଲୀମ୍, ପକ୍ଷପବନେନ
ବ୍ୟଜନସ୍ୟ ଦ୍ୱିରନୁକମ୍ପ୍ୟମାନାମିବାବତଂସମଧୁକରୈଃ, ଅବତଂସମଧୁକରରବ-
ଦହନଦଗ୍ଧମିବ ଶ୍ରୋତ୍ରମପାଙ୍ଗନିର୍ଗତେନାଶ୍ରୁସ୍ରୋତସା ସିଞ୍ଚନ୍ତୀମ୍, ଅନ୍ତ-
ପ୍ରବୃଦ୍ଧସ୍ୟ ବ୍ରଶ୍ରୁଣୋ ନବାଦ୍ରମୃଣାଳକାମିବ କର୍ପୂରକେତକୀକଳିକାଂ କର୍ଣ୍ଣେ
କଳୟନ୍ତୀମ୍, ଆୟତଶ୍ୱାସ ବିଧୂତତରଳତେନ ଚ ସନ୍ତାପଭୟପଲାୟ-
ମାନେନ ଦେହପ୍ରଭାବିତାନେନେବାଂଶୁକେନ ବିମୁଖମାନକୁଚକଳଶାମ୍,
ଆପତତ୍ ପ୍ରଚଳଭ୍ରମର ପ୍ରତିବିମ୍ବଂ ଚ କୁଚକଳଶଯୁଗଳଂ ପ୍ରିୟାନୁଗମନୌ-
ତ୍ସୁକ୍ୟକୃତପକ୍ଷମିବ କରତଳେନ ନିରୁନ୍ଧନ୍ତୀମ୍, ମୁହୁର୍ମୁହୁର୍ଦ୍ଧକଳତସ୍ୟା
ତୁଷାରଶିଳାଶାଳଭଞ୍ଜିକାମାଲିଙ୍ଗନ୍ତୀମ୍, ମୁହୁଃ କପୋଳଫଳକେନ କର୍ପୂର-
ପୁତ୍ରିକାମାଶ୍ଳିଷ୍ୟନ୍ତୀମ୍, ମୁହୁଶ୍ଚରଣାରବିନ୍ଦେନ ଚନ୍ଦନପଙ୍କପ୍ରତିଯାତନାମାମୃ-
ଶନ୍ତୀମ୍, ସ୍ତନସଂକ୍ରାନ୍ତେନାମ୍ବୁମୁଖେନାପି କୁମୁଦଦଳେନେବ ପରିବୃତ୍ୟ
ବିଲୋକ୍ୟମାନାମ୍, କର୍ଣ୍ଣପୁରପଲ୍ଲବେନାପି ସ୍ୱପ୍ରତିବିମ୍ବଶାଦ୍ୱିକା ସୋତ୍କଣ୍ଠେ-
ନେବ ଚୁମ୍ବ୍ୟମାନକପୋଳଫଳକାମ୍, ହାରୈରପିମୁକ୍ତାମ୍ବୁଭିର୍ମଦନପରବ-
ଶୈରିବ ପ୍ରସାରିତକରୈରାଲିଙ୍ଗ୍ୟମାନାମ୍, ମଣିଦର୍ପଣମୁଦ୍ରିତୈକଦ୍ଧତଂ
ବନୋଦ୍ଧତବ୍ୟମେତଦଦଥ ଜୀବିତସ୍ପର୍ଶନସ୍ୟଂ.ଶପଥଂ ଶଶିନମିବ କାରୟନ୍ତୀମ୍,
କରିଣୀମିବ ସମ୍ମୁଖାଗତପ୍ରମଦବନଗନ୍ଧବାରଣ ପ୍ରସାରିତକରାମ୍, ପ୍ରତି-
ତାମିବାନଙ୍ଗାସ୍ତ୍ରଦକ୍ଷିଣବାତମୃଗାଗମନାମ୍, ମଦନାଭିଷେକବେଦିକାମିବ
କମଳ ବୃତଚନ୍ଦନଧବଳପୟୋଧରକଳଶାବଷ୍ଟବ୍ଧପାର୍ଶ୍ୱାମ୍, ଆକାଶକମଳି-
ନୀମିବ ସ୍ୱଚ୍ଛାମ୍ବରତଳଦୃଶ୍ୟମାନମୃଣାଳକୋମଳୋରୁମୂଳାମ୍, କୁସୁମଚାପ

ଲେଖାମିବ ମଦନାବେପିତଚସୁଣକୋଟିକାନ୍ତଚରମ୍, ମଧୁମାସଦେବତାମିବ ଶିଶିରଦ୍ଵାରଣୀମ୍ ମଧୁକରୀମିବ କୁସୁମମାର୍ଗଣାକୁଳାମ୍, ଚନ୍ଦନବଲେପନାମନଙ୍ଗତରଙ୍ଗିଣୀମ୍ ଚ ବାଲାଂ, ମନ୍ମଥଜନନୀଂ ଚ ମୃଣାଳନାମଭ୍ୟର୍ଥିତରୂପାରଂପୂର୍ଣାଂ ଚ କାଦମ୍ବରୀଂ ବ୍ୟଲୋକୟତ୍ ॥

(କାଦମ୍ବରୀ, ପୂର୍ବଭାଗ—ବାଣ ଭଟ୍ଟ)

ଅଧିତ କାପି-ମୁଖେ ସଲିଲଂ ସଖୀ
ପ୍ୟଧିତ କାପି ସରୋଜଦଳୈଃସ୍ତନୌ
ବ୍ୟଧିତ କାପି ହୃଦି ବ୍ୟଜନାନିଲଂ
ନ୍ୟଧିତ କାପି ହିମଂ ସୁତନୋସ୍ତନୌ ॥

( ନୈଷଧଚରିତ – ଶ୍ରୀହର୍ଷ )

ରତପତି-ପ୍ରହିତାନଲଦୂତତାଂ
ପ୍ରତିପଦଂ ଦଦତି ମଲୟାନିଲେ
ତଦୁରୁତାପଭୟାତ୍ ମୃଣାଳିକାସ୍ୱ-
ମିୟଂ ଭୁଜଗାସ୍ୟମିବାଦଧେ ॥

( ନୈଷଧଚରିତ – ଶ୍ରୀହର୍ଷ )

ସ୍ତନନ୍ୟସ୍ତୋଶୀରଂ ଶିଥିଳିତମୃଣାଳୈକ ବଳୟଂ
ପ୍ରିୟାୟାଃ ସବାଧଂ କିମପି କମନୀୟଂ ବପୁରିଦମ୍ ।
ସମସ୍ତାପଃ କାମଂ ମନସିଜନିଦାଘପ୍ରସରୟୋ –
ର୍ନ ତୁ ଗ୍ରୀଷ୍ମସ୍ୟୈବଂ ସୁଭଗମପରାଦ୍ଧଂ ଯୁବତିଷୁ ॥

( ଅଭିଜ୍ଞାନ ଶାକୁନ୍ତଳ—କାଳିଦାସ)

ଅବିରଳନିପତିତମଦନଶରାଦିବ ଭବଦବନାୟ ବିଶାଳମ୍
ସ୍ୱହୃଦୟମର୍ମଣି ବର୍ମକରୋତି ସଜଳନଳିନୀଦଳଜାଳମ ॥

(ଗୀତଗୋବିନ୍ଦ – ଜୟଦେବ)

ପଦ୍ମିନୀରେ ଉପଚାର କରିବାକୁ ଯେନ
ସରସୀମାନେ ହୋଇଲେ ପଦ୍ମିନୀ-ବିହୀନ ॥

(ଲାବଣ୍ୟବତୀ—ଉପେନ୍ଦ୍ର ଭଞ୍ଜ)

ନୀରଜଦଳଶୟନ କରି ନିରନ୍ତର
ଜଗିଥାଉ ନିଦାଘରେ ସଜନୀନିକର ॥

( ପ୍ରେମସୁଧାନିଧି – ଉପେନ୍ଦ୍ରଭଞ୍ଜ)

ଯମୁନାନ୍ତରେ ରତିପତି ସ୍ମିତରେ ଅତି ଅବଶ ହୋଇଲେ ସେ
ଯତନେ ଉରଜ-ଶୋଭ୍ୟ ନୀରଜ ଶେଯ ଶେଯାଇ ଶୋଇଲେ ସେ
ଯୁବତୀ—ଯଦୁନାଥେ ପ୍ରୀତି ରଚି ସେ
ଯୁଗ ସମ ହୋଇ ଲବକ ସେ ନବ ପଲ୍ଲବେ ହୁଅନ୍ତି ବସ୍ତି ସେ ॥
(ଛାନ୍ଦ ଭୂଷଣ – ଉପେନ୍ଦ୍ର ଭଞ୍ଜ)

ଏତେ ବୋଲି ମୋହି ଗଲେ ଧରଣୀ ତଳେ
ଜଳ ସିଞ୍ଚି ସଖୀ ତାର ଧଇଲେ କୋଳେ ।
( ଶ୍ରୀକୃଷ୍ଣଙ୍କର ବୃନ୍ଦାବନଯାତ୍ରା—ଶିଶୁଶଙ୍କର ଦାସ)

ମୁଖେ ନୀର ସିଞ୍ଚି ଧୀରେ ଧୀରେ ବସି ଚନ୍ଦ୍ରଲେଖା ମୁଖ ହରସ
ବାବୁ ଦଇବ କେବଣ ବପଣ୍ଡିତ ବରଷା କଲ୍ ମଧୁମାସ
ସଘାତ, ମୋହମେଘ ତୋଟେ ବୁଝିଲା
ଲୋଚନ-ନୀର ବୃଚରେ ବରଷନ୍ତେ କୋକିଳ ବଚନ ବାଧିଲା ॥
(ଉଷା'ଭିଳାଷ—ଶିଶୁଶଙ୍କର ଦାସ)

ରମଣୀ କେ ପୁଣି ଗୋଳି ଘନସାର ଦେଉଅଛୁ ତାର ହୃଦରେ
ରାଜୀବ ନାଳ ମାଳ ମାଳ କରି କେ ଲମ୍ବାଇ ଦେଉଛୁ ଗଳାରେ
ରସିକା-ରତନ ଯତନ ପାଇଁକି
ରଚେ କେ ଶତ ଶତଦଳତଳପ ନସ୍ତନେ ଅନାଇ ପାଣିକି ॥
(ବଦଗ୍ଧଚନ୍ତାମଣି—ଅଭିମନ୍ୟୁ)

ଏତେ କହି କରି ବାଲୀ
ମୋହେଣ ପଡ଼ିଲା ଢଳି
ଧାଇଁ ଧରି ସଖୀ ବେଦନ କରନ୍ତି ଆଲଟ ଚାମର ଢ଼ାଳି ॥
(ରାଧିକା ବଳାପ—ଦେବ ଦୁର୍ଲ୍ଲଭ ଦାସ)

ଢାଳିଲେକ ସଖା ସଜନୀ କୋଳେ
ବାନ୍ଧିଲେକ ସ୍ତୁଦ୍ଧା ମୃଣାଳ ନାଳେ
ବୋଳିଲେକ ଉଷୀର ତା ଶ୍ରୀଅଙ୍ଗେ
ଚଳିଲେକ ଶୁଣି ଆନ ପ୍ରସଙ୍ଗେ
ଖୋଳିଲେକ ନହେ ଧଇ
ଝୁଲିଲେକ କରେ ବ୍ୟଜନ କରତେ

ଗଳଲଗ୍ନ ଅଶ୍ରୁ ଧାର ॥

(ଯୁଗଳରସାମୃତଲହରୀ – କବିସୂର୍ଯ୍ୟ ସଦାନନ୍ଦ ବ୍ରହ୍ମା)

ବଂଶୀଧାରୀ ! ଅଶ୍ରୁବିବର୍ଣ୍ଣିତି, ଜୀବନେ କଣ୍ଠୋଷ୍ଠ ହେ –

ବିରହରେ ସଖୀ ହୋଇଛୁ କାତର
ସଙ୍ଗୁଁ ସରଜଣି ସରୋଜ ପତର
ଦେଖିଲି ସଖିର କଣ୍ଠରେ ମାତର
ଜୀବନକୁ ଅଛୁ ଧରି ହେ ॥

(ସଙ୍ଗୀତକଳ୍ପଲତା – କବିସୂର୍ଯ୍ୟବଳଦେବ ରଥ)

ଶୀତଳ ନଳିନୀ ଦଳ ଶୟନେ
ଲୋଟିଲା ବାଳା ତାପ-ପ୍ରଶମନେ
ଖର ମିହିର-କରେ ସନ୍ତାପିତ
କୁଲ୍ୟା-ସଲିଳେ ଶଫରୀ ଯେମନ୍ତ
ତେମନ୍ତ ହୋଇଲା
ଲବେ ହେଲେ ଶାନ୍ତି ଲଭି ନ କଲା

(ସଦ୍ଭାବସ୍ୱାନନ୍ଦ – ବ ନ:ମ୍ବର ଆର୍ଯ୍ୟ)

ବିରହ ତାପନାଶାର୍ଥେ ଶିବ ନାମୋଚ୍ଚାରଣ:—

କେ ଶିବଙ୍କୁ ଡାକେ ହୋଇ ଆତୁର
କୋଳାହଳ ନାଦେ ପୂରିଛୁ ପୁର
କେ ବୋଲେ ମନ୍ଦ ମନ୍ଦ କରି ବିଞ୍ଚି
କେ ବୋଲେ ବେଗେ ଜଳ ସିଞ୍ଚି ସିଞ୍ଚି
କେ ହୋଇ ବିକଳ
କହୁ ସଖି ଚନ୍ଦ୍ର ଚନ୍ଦନ ଗୋଳ ॥

(ରସକଲ୍ଲୋଳ – ଦୀନକୃଷ୍ଣ ଦାସ)

ସଖି ଦର୍ଶନରେ ବିରହିଣୀର ମିଳନପିପାସା:—

ଅଙ୍ଗେଷ୍ୱାଭରଣଂ କରୋତି ବହୁଶଂ ପତ୍ରେଽପି ସଞ୍ଚାରିଣି
ପ୍ରାପ୍ତଂ ତ୍ୱାଂ ପରିଶଙ୍କତେ ବିତନୁତେ ଶଯ୍ୟାଂ ଚିରଂ ଧ୍ୟାୟତି ।
ଇତ୍ୟାକଳ୍ପବିକଳ୍ପତଳ୍ପରଚନାସଙ୍କଳ୍ପଲୀଳାଶତ—
ବ୍ୟାସକ୍ତାପି ବିନା ତ୍ୱୟା ବରତନୁର୍ନୈଷା ନିଶାଂ ନେଷ୍ୟତି ॥

(ଗୀତଗୋବିନ୍ଦ – ଜୟଦେବ)

ଶଶାଙ୍କ ସଘାତ ସଘାତ ସଂଘାତ ବିଶିଖ କରିବ ହୃଦରେ
ସୁମନା ସୁମନା ସୁମନା-ମଣ୍ଡନା ଯେବେ ଯଶ ହେବ ଉରରେ
କୋକିଳ, ସରୁ ନ ଥିବ ଦବାଗତ
ଶୋକ କରୁଥିବ ଅନାଇ ସୁମନା ସୁମନା ସୁମନା ସୁଚରଣୀ ।୩୨।

ଅନ୍ୱୟ – ରେ କୋକିଳ, ଶଶାଙ୍କ (ଚନ୍ଦ୍ର) ସଂଘାତ (ମିଳନ) ସଘାତ (ଆଘାତ) ବିଶିଖରୂପେ ତାର ହୃଦକୁ ସଂଘାତ (ବିନାଶ) କରିବ । ସେ ସୁମନା (ପୁଷ୍ପ) ମଣ୍ଡନା ସୁମନା (ଆନନ୍ଦମନା) ସୁମନା (ପଣ୍ଡିତା) ଯେବେ ମୋ ଉରରେ ଯଶ ହେବ । ତାର ଦନ ଗତ ସରୁ ନ ଥିବ । ସେ ସୁଚରଣୀ (ଚନ୍ଦ୍ରିକା) ସୁମନା (ପ୍ରିୟା) ସୁମନା (ପ୍ରୀତିଯୁକ୍ତା) ସୁମନା (ମାଳତୀ ଫୁଲ)କୁ ଅନାଇ ଶୋକ କରୁଥିବ ।

ଅର୍ଥ – ରେ କୋକିଳ, ସେ ଚନ୍ଦ୍ରଙ୍କର ମିଳନ (ରତିଯୁକ୍ତ ଚନ୍ଦ୍ରର ପ୍ରଣୟ) ଦେଖିଲାମାତ୍ରେ ତାର ହୃଦୟରେ ଆଘାତ ପାଇବ ଓ ସେ ଦୁଃଖ ତାକୁ ଶରରୂପେ ବିନାଶ କରିବ । ସେ ପୁଷ୍ପମଣ୍ଡନା ହର୍ଷମନା ଓ ସୁପଣ୍ଡିତା ସତେ କଣ ମୋ ଉରରେ ଯଶ ହେବ ଅର୍ଥାତ୍ ମୋ ଉରମଣ୍ଡନା ହୋଇ ମୋତେ ଯଶସ୍ୱୀ କରିଇବ ? ମୋତେ ଚନ୍ଦ୍ରାକର ତାର ଦନଗତ ସରୁ ନ ଥିବ । ସେ ମିଳନ ଆଶାରେ ତାର କୁଚ ଓ ଗଣ୍ଡଦେଶକୁ ଚର୍ଚ୍ଚ କରିଥିବ । ମୋ ପ୍ରୀତିଯୁକ୍ତା ପ୍ରିୟତମା ରାଧା ମାଳତୀଫୁଲକୁ ଦେଖି ବିପରୀତ ରତି ମନେ ପକାଇ ଦୁଃଖ କରୁଥିବ ।

ବିରହିଣୀର ଅଙ୍ଗସଙ୍ଗ ଲଗି ବିରହୀର ବ୍ୟାକୁଳତା:—

ଯିବ ସହସ୍ର ଜନ୍ମେ କି ପାଶୋରି
ଅମୃତରୁ ପ୍ରିୟା ବାଣୀ ମଧୁର ।
ଆଉ ଭେଟିବ ନୋହୁଛୁ ପରତେ
ଭେଟ ହେବା ଉପାୟ ଅଛୁ ଏତେ ।
ପୁଣି ବିରହ-ଅନଳେ ଦହନ
ହୋନ୍ତା ଏ ମୋହର ତନୁ ବହନ ।
ଭସ୍ମ ଉଡ଼ାଇ କୃପାରେ ପବନ
ନେଇ ପକାନ୍ତା କାନ୍ତା ସନ୍ନିଧାନ ।

କସ ବୋଲି ବାଳା କରନ୍ତା ଦୃଷ୍ଟି
ତହିଁ ପରେ ହୁଅନ୍ତା ସୁଧା ବୃଷ୍ଟି ।
ହୋଇ ମୂର୍ତ୍ତିମନ୍ତ ମୁଁ ଗ୍ରହି ମୁଖ
କର ଯୋଡ଼ି ଜଣାନ୍ତି ସବୁ ଦୁଃଖ ॥
(ଲାବଣ୍ୟବତୀ—ଉପେନ୍ଦ୍ର ଭଞ୍ଜ)

ବିରହିଣୀ ଚନ୍ତତା:—
କୃଷ୍ଣ ବିହୁନେ ସେହୁ ମତ ଗୋପୀ
ଚିନ୍ତା ରତ୍ନାକରେ ହୋଇଲେ ତାପୀ ॥
(ମଥୁରାମଙ୍ଗଳ - ଭକ୍ତଚରଣ)

ବିରହିଣୀ ପକ୍ଷରେ ଋତୁପର ସ୍ୱରୂପ:—
ତାଂ ଜାନୀଥା ପରିମିତକଥାଂ ଜୀବିତଂ ମେ ଦ୍ୱିତୀୟଂ
ଦୂରୀଭୂତେ ମୟି ସହଚରେ ଚକ୍ରବାକୀମିବୈକାମ୍ ।
ଗାଢ଼ୋତ୍କଣ୍ଠାଂ ଗୁରୁଷୁ ଦିବସେଷ୍ୱେଷୁ ଗଚ୍ଛତ୍ସୁ ବାଳା
ଜାତଂ ମନ୍ୟେ ଶିଶିର-ମଥିତାଂ ପଦ୍ମିନୀ ବାନ୍ୟରୂପମ୍ ॥
(ମେଘଦୂତ—କାଳିଦାସ)

ବାସରେ ଝଡେ ସଜସରେଜ ଯେ
ବାସରେ ତା ପାଶେ ଭ୍ରମ ଭୁଞ୍ଜେ ।
ବାସରେ ଯୁଗ କରଇ ବିସ୍ତର
ବାସରେ ଯୁଗ ନୋହୁ ପଞ୍ଚଶର
ବିନାଶିଲେ ପୁଣ
ବିନାଗତରେ ତ ଗଲା ଜୀବନ ॥
(ବୈଦେହୀଶବିଳାସ—ଉପେନ୍ଦ୍ର ଭଞ୍ଜ)

ମାଳତୀ ଫୁଲ ଦର୍ଶନରେ ବିପଶ୍ରିତ ରତର ସୂଚନା:—
ଘନେ ଯେ ବୃଷ୍ଟି ସୁମନାମ ଲାକୁ
ଶ୍ରୀକରେ ଦେଇ ବୋଇଲି ବାଳାକୁ
ତୋର ମୋର ଆଜଠାରୁ ମାଳତୀ
ହୋଇ ନ କଲି ସେ ବଦନ ପୋତ
କେଶୁଁ କୁଟୁଣୀକ
ଦେଖାଇ ବୋଇଲି ଏ ନାମେ ଡାକ ॥
(ଲାବଣ୍ୟବତୀ – ଉପେନ୍ଦ୍ର ଭଞ୍ଜ)

ଅନ୍ୟାନ୍ୟ କାବ୍ୟମାନଙ୍କରେ ବିପରୀତ ରତିର ବର୍ଣ୍ଣନା: –

ଉରସି ମୁରାରେରୁପହିତହାରେ ଘନ ଇବ ତରଳବଲାକେ
ତଡ଼ିଦିବ ପୀତେ ! ରତିବିପରୀତେ ରାଜସି ସୁକୃତବିପାକେ ॥
(ଗୀତଗୋବିନ୍ଦ – ଜୟଦେବ)

ଉରସି ନିପତିତାନାଂ ସ୍ରସ୍ତଧମ୍ମିଲ୍ଲକାନାଂ
ମୁକୁଳିତନୟନାନାଂ କିଞ୍ଚିଦୁନ୍ମୀଲିତାନାମ୍ ।
ଉପରି ସୁରତଖେଦସ୍ୱିନ୍ନଗଣ୍ଡସ୍ଥଳାନାଂ
ମଧୁରମଧୁ ବଧୂନାଂ ଭାଗ୍ୟବନ୍ତଃ ପିବନ୍ତି ॥
(ଶୃଙ୍ଗାରଶତକ—ଭର୍ତ୍ତୃହରି)

ଶ୍ରୁତିବାଣୀ ସମୂହରେ          ନ ମୋହି ଗ୍ରାମା ସ୍ନେହରେ
ବିପରୀତ ମନୋହରେ ଯେ ନ ବିହରେ
କଳ୍ପାୟୁ ହୋଇ ଗୃହରେ          ଥିଲେ ଯେ ଅଛି କୁହରେ
ସେବା କଣନାହିଁ ହରେ ତାହା ଦେହରେ
ଏ ରସେ ଯେ ନଶିକ ହରି
ଧନ୍ୟ ଧନ୍ୟ ତାର ଜୀଇବାର ପ୍ରହରେ ॥
(ପ୍ରେମସୁଧାନିଧି – ଉପେନ୍ଦ୍ର ଭଞ୍ଜ)

ତପସମସ୍ତ ଜଡ଼କର କରର ରଣରଣ ରଣ ରଚନ
ନୟନ ତପ ସଫଳ କରଣରେ ମଦନମଦ ବରଧନ
ଜଳଦ, ଉଲଟ ରସ ସରଜନ
ଅକଥନ ରସ ଜନନ ଏସନ ଚରଣ କଟକ ମଣ୍ଡନ ॥
(ଅବନାରସତରଙ୍ଗ—ଉପେନ୍ଦ୍ର ଭଞ୍ଜ)

କମଳାନନୀରେ ସଦା ବିପରୀତ ହେବାରେ ମୁହିଁ କାମୀକ
କଣବ ଶରଣ କି ସେବା ଗ୍ରନ୍ଥରେ ବୋଲି ସଖି ଇଙ୍ଗିତକ ॥
(କଳାକଉତୁକ—ଉପେନ୍ଦ୍ର ଭଞ୍ଜ)

ଝୁମି ଝୁମି କାମମଦ ଖେଳେ
ଝୁଲୁ ଝୁଲୁ ନାସା ଭୂଷା ଲେଳେ
ଝଲ ଝଲ ଝଟକିଲା ବେଳେ
ଝଙ୍କି ନେଲା ସ୍ୱର୍ଗ-ସୁଖ-ମାର୍ଗକୁ ସୁସାରେ ॥
(ସଙ୍ଗୀତ କଳ୍ପଲତା – କବିସୂର୍ଯ୍ୟ ବଳଦେବ ରଥ)

ବିପରୀତ ରତି କାଳେ ବକ୍ଷସ୍ଥଳେ
କେଶପାଶ ଫିଟି ଲେଟୁଥିବ ଖେଳେ ।
ମୁକୁଳିତ ନେତ୍ର ଲଜ୍ଜାସୁଖ ବଶେ
ଦରବିକଶିତ ହାସ ଗଣ୍ଡଦେଶେ ।
ସ୍ୱେଦବିନ୍ଦୁ ଥିବ ସେହି ନବବାଳୀ-
ଶୋଣାଧରୁ ମଧୁ ପିଏ ଭାଗ୍ୟଶାଳୀ ।।
(ଭକ୍ତିହରି ହୃଷିତ – ରାଧାମୋହନ ରାଜେନ୍ଦ୍ର ଦେବ)

ଶିଖିକଳାପ କୁନ୍ତଳା          କେଉଁ ବାମ କେଳିକଳା-
କୁଶଳା ପୂରୁ ସ୍ପୃହିତ କରି ରସିଲା
ଶଙ୍କର କର ଡମ୍ବରୁ          ଘୂରୁକଣ୍ଠି ଘୁଙ୍ଗୁରୁ
ଝୁହୁଁ ଝୁହୁଁ କାନ୍ତ ଚିତ୍ତ ତରଳିଗଲା,
ଶ୍ୟାମଘନେ ଚଞ୍ଚଳା ପରି
ଶ୍ୟାମ ଉପରକୁ ଶୋଭା ପାଇଲା ଗୋରୀ ।।
(ଶ୍ୟାମରସୋତ୍ସବ – ବ୍ରଜନାଥ ବଡ଼ଜେନା)

ମୁନିମନ ମୋହିନୀ          ମହେଶଭୁଜ ଘେନି
ବିପରୀତରେ ରତ ହୋଇ
ମନ୍ମଥରେ ଲଢ଼ାଇ          କରି ତାର ବଡ଼ାଇ
ଛଡ଼ାଇ ଦିଏ ଘଉଡ଼ାଇ
ରେ ବଳାହକ !
ମାନସ ଭଳି ସେ ମଜ୍ଜାଇ
ଟିକି କିଙ୍କିଣୀକ ବଜାଇ
ମୋତି ବପଣି ସଙ୍ଗେ          ନଚାଇ କେତେ ରଙ୍ଗେ
ମୋ ନେତ୍ର ସାର୍ଥକ କରଇ ।।
(ବଳାହକ ଚଉତିଶା – ବ୍ରଜରାଜ ସିଂହଦେବ)

ହେବନି ତା ମୁଖ ବନଜ ବନଜ ବନଜ ବାଞ୍ଛଳା ପରାଏ
ହଂସଗତି କରିବାକୁ ଶିବ ଶିବ ଶିବ ଗୁଣୁଥିବ ହୃଦସ୍ତେ
କୋକିଳ, ହେଳାବନ୍ତି ପାଶେ କହିବ
ହେଲେ ନାଶୁଅଛୁ ଦର୍ପକ ଦର୍ପକ ଏଥିରୁ କେ ମୋତେ ତାରିବ ।୮୩।

ଅନ୍ୱୟ – ରେ କୋକିଳ, ତା ବନଜ (ପଦ୍ମ) ମୁଖ ବନଜ (ଅରଣ୍ୟଜାତ) ବନକ (ଝଞ୍ଜଫଳ) ପ୍ରାପ୍ତ ହେବଣି । ସେ ହଂସଗମନା କାମଜ୍ୱଳାରୁ ମୁକ୍ତ ଲଭିବାକୁ ଶିବ (ମହାଦେବ) ଶିବ (ଚନ୍ଦନ) ଓ ଶିବ (ଜଳ) ସୁଶୃଖିବ (ଲୋଡ଼ୁଥିବ) । ମୋ ହେଲାବତୀ ପାଶରେ ଏତକି କହିବ ଯେ ମୋତେ ଦର୍ପକ (ଦର୍ପକାସ୍ତ୍ର) ଦର୍ପକ (କନ୍ଦର୍ପ) ନାଶୁଅଛି ମୋତେ ଏଥିରୁ କିଏ ବା ତାଶବ ।

ଅର୍ଥ – ରେ କୋକିଳ, ତାର ପଦ୍ମମୁଖ ଜଙ୍ଗଲି ଝଞ୍ଜଫଳ ପରି କଳା ପଡ଼ିଯିବଣି । ମୋ ହଂସଗମନା ରାଧା କାମତାପନାଶାର୍ଥେ ଶିବଙ୍କୁ, ଚନ୍ଦନକୁ ଓ ଜଳକୁ ଲୋଡ଼ୁଥିବ । ଦର୍ପକାସ୍ତ୍ର କନ୍ଦର୍ପ ମୋତେ ନାଶ କରୁଛି । ହେଲାବତୀ ରାଧା ପାଶରେ ଏତକ କହିବ ଯେ, ତା ବ୍ୟତୀତ ଆଉ ବା କିଏ ମୋତେ ଏ କାମ ଯନ୍ତ୍ରଣାରୁ ରକ୍ଷା କରିବ ।

ନାରୀର ମୁଖ ପଦ୍ମ ସହ ତୁଳନୀୟ:—

ସର୍ବପଦ୍ମପ୍ରଭାସାରଃ ସମାହୃତ ଇବ କ୍ୱଚିତ୍
• ତଦାନନଂ ବିଭାତଡି ତାମଭୂତୋପମା ବିଦୁଃ ॥
(ଦଶକୁମାରଚରିତ— ଦଣ୍ଡୀ)

ତ୍ରାଣକର୍ତ୍ତ୍ରୀ ଓ ସୁଖଦାୟିନୀ ନାରୀହିଁ ବିରହୀର କାମ୍ୟ:—

ନ ଧନଂ ନ ଚ ରାଜ୍ୟସମ୍ପଦଂ
ନହି ବିଦ୍ୟାମିଦମେକର୍ଥୟେ ।
ମୟି ଧେହି ମନାଗପି ପ୍ରିୟେ !
କରୁଣାଭଙ୍ଗିତରଙ୍ଗିତଦୃଶାମ୍ ॥
(ରସଗଙ୍ଗାଧର – ପଣ୍ଡିତରାଜ ଜଗନ୍ନାଥ)

ବିଚକ୍ଷଣେ ! ପଦ୍ମିନି ! ପଦ୍ମଗନ୍ଧେ !
ପ୍ରମତ୍ତ-ମାତଙ୍ଗଗତେଽନୁରକ୍ତେ !
କୃପାମ୍ବୁଜେ ! ଜୀବୟ ମାଂ ମନୋଜ୍ଞେ !
ମନୋଜ-ବାଣ-ବ୍ରଣ-ଖିନ୍ନଗାତ୍ରମ୍ ॥
(ଚୌରପଞ୍ଚାଶିକା—ବିଲ୍ହଣ)

ସୁଶୀଳା ଅବଳା ତନୁକୋମଳା
କୃପଜା ପଦ୍ମିନୀ ରସକୁଶଳା

ମତ୍ତଦ୍ୱିରଦଗାମିନି ! ଅଳସୀ
ଅନୁରାଗିଣୀରେ ! କୁଞ୍ଚିତକେଶି !
କାମବାଣେ ଖିନ୍ନ
ମୋ ଜୀବ ରଖ ରମଣୀରତନ ॥
(ଇଚ୍ଛାବତୀ—ଧନଞ୍ଜୟ ଭଞ୍ଜ)

ଫେଡ଼ି ବସନ ସୁତନୁ ତନୁରେ କି ମୋ ତନୁ ସଙ୍ଗେ ମିଶାଇବ
ପରିହାସେ ରସି ରସିକାବରଙ୍କୁ ଥରେ ଥରେ କି ହସାଇବ
ଚନ୍ଦ୍ରମା—ତାଙ୍କୁ କେବେ ନ ଭୁଲାଇବ
ଦୁଃଖ ନିକର କରକାଦମ୍ଭୀ ଘେନି ସୁଖସାଗରେ ଭସାଇବ ॥
(ପ୍ରେମସୁଧାନିଧି – ଉପେନ୍ଦ୍ର ଭଞ୍ଜ)

ପଟ୍ଟନଟ ଖଞ୍ଜରୀଟ    ଘଟଣନେତ୍ରା ମୁଁ ଘଟ
ତୁମ୍ଭ କି ଜୀବନ କନ୍ଧ କନ୍ଥ
ତୁ ପରିଣତ ଚନ୍ଦ୍ରମା    ଚକୋର କରେ ମୁଁ ସମା
ମୁଁ ସ୍ତବକ ତୁ କି ବାଣବାନ୍ଧ
ଜୀବବନ୍ଧୁ !
ମୁଁ କି ବନ ତୁ ବସନ୍ତଶିଖୀ
ବିକଶିତ ଅରବିନ୍ଦ    ତୁ କି ମୁଁ ଲୋଭୀ ମିଳିନ୍ଦ
ମୁଁ ମୀନ କି ତୁ ଗମ୍ଭୀର ବାଣ ॥
(ଚନ୍ଦ୍ରକଳା – କବିସୂର୍ଯ୍ୟ)

ଗୃହ ଲକ୍ଷ୍ମୀ ମୋର    ମୋ ନେତ୍ରର ମଣି
ଅମୃତ ଅଞ୍ଜନ ସରି
ସେ ଅଙ୍ଗ ପରଶେ    ମଣଇ ଚନ୍ଦନ
ଦେହେ ବୋଲା ହେଲ ପରି ।
ସେ ଭୁଜ ମୋ କଣ୍ଠେ    ମୁକୁତାର ହାର
ପ୍ରାୟ ସ୍ନିଗ୍ଧ ସୁଶୀତଳ
ପ୍ରିୟାର ସବୁଦ୍ଧି    ପ୍ରୀତିକର ଏକା
ବିରହ କରେ ବିକଳ ॥
(ଉତ୍ତରରାମ ଚରିତ – ମଧୁସୂଦନ ରାଓ)

ଶରଦଚନ୍ଦ୍ରମୁଖୀ ମୁ କ୍ଷୀଣ ହେବା ଦେଖି
ବାଦେ କ୍ଷିଆଲ ଯୋଖି ମାରେ ମାରଣା ଶର
ଶରଣ ତୁ ନବାନା ଘନା କରେ ସୁମନା
ମନାଶିବ ମୋ ଶିବ ବସିବାକୁ ପାଶର ॥
(ସଙ୍ଗୀତ ଶିରୋମଣି—ନରନ୍ତନ କର)

କ୍ଷମାସିନ୍ଧୁ ଥାଉ ବୃଷାଙ୍କ ବୃଷାଙ୍କ ବୃଷାଙ୍କ ବୃଷାଙ୍କ ଦହୁଛୁ
କ୍ଷିତିମଣ୍ଡନା ପାଶେ ଏତେ କହିବୁ କର ଧରି ତୋତେ କହୁଛୁ
କୋକିଳ, କ୍ଷମ ହେ ଅଗମ ବ୍ରଜକୁ
କ୍ଷେମେ ରକ୍ଷା କର ଉପଇନ୍ଦ୍ର, ଉପଇନ୍ଦ୍ର ଭଞ୍ଜ ମଙ୍ଗରାଜକୁ । ୩୮ ।

ଅନ୍ୱୟ—ରେ କୋକିଳ ମୋ କ୍ଷମାସିନ୍ଧୁ ଥାଉ ଥାଉ ବୃଷାଙ୍କ (ଶିବ), ବୃଷାଙ୍କ (ମୟୂର) ବୃଷାଙ୍କ (ଜଳ) ଓ ବୃଷାଙ୍କ (କାମଦେବ ଅଙ୍କସ୍ଥିତା ରତିନାୟିକା) ମୋତେ ଦହୁଛନ୍ତି । ତୋତେ କର ଧରି କହୁଛୁ ତୁ ଏତିକି ମାତ୍ର ମୋ କ୍ଷିତିମଣ୍ଡନା ପାଶରେ କହିବୁ । ଅଗମ (ଦୁର୍ଗମ) ବ୍ରଜକୁ ତୁ ଯାତ୍ରା କର । ହେ ଉପଇନ୍ଦ୍ର (ବିଷ୍ଣୁ) ତୁମେ ଉପଇନ୍ଦ୍ର ଭଞ୍ଜ ମଙ୍ଗରାଜକୁ କ୍ଷେମେ (ମଙ୍ଗଳରେ) ରଖ ।

ଅର୍ଥ—ରେ କୋକିଳ, ମୋ କ୍ଷମାସାଗର ରାଧା ଥାଉ ଥାଉ ମୋତେ ଶିବ (ଅର୍ଦ୍ଧନାରୀଶ୍ୱର ମୂର୍ତ୍ତି-ଦର୍ଶନରେ କାମୋଦ୍ରେକ) ମୟୂର (ରାଧାର କେଶ ମୟୂର ପୁଚ୍ଛ ସମ—ଦର୍ଶନରେ ରାଧାର ସ୍ମୃତି), କାମଦେବ ଅଙ୍କ ସ୍ଥିତା ରତି ନାୟିକା (ରତିଦେବୀ ଦର୍ଶନରେ ରାଧା ସହିତ ରତି କରିବାକୁ ଇଚ୍ଛା) ଓ ଜଳ (ଏଠାରେ ଯମୁନା ଜଳ ସନ୍ଧିରେ ବହୁ ପ୍ରକାର ଓ ବହୁବାର ଜଳକ୍ରୀଡ଼ା ସମ୍ପାଦିତ ହୋଇଛି) ମୋତେ ଦହନ କରୁଛନ୍ତି । ପର୍ବତ ଓ ଘନବୃକ୍ଷଲତା ପରିବେଷ୍ଟିତ ଦୁର୍ଗମ ବ୍ରଜକୁ ତୁ ଶୁଭଯାତ୍ରା କର । ହେ ବିଷ୍ଣୁ ! ତୁମେ ଉପଇନ୍ଦ୍ର ଭଞ୍ଜ ମଙ୍ଗରାଜକୁ ମଙ୍ଗଳରେ ରଖ ।

ଶିବ ଅର୍ଦ୍ଧନାରୀଶ୍ୱର ମୂର୍ତ୍ତି ଓ ତାହା ଦର୍ଶନରେ ବିରହୀର ଚିନ୍ତା:—
ଈଶ୍ୱର କଲେ ପାଇବି
ଈଷତେ ଦୁଃଖ ଦହିବି
ଈଶ୍ୱରୀ ତାଙ୍କ ଅର୍ଦ୍ଧାଙ୍ଗ ହେଲି ଭଲ ବାଳା ଅଙ୍ଗେ ଜଡ଼ି ରହିବି ।

ଇନ୍ଦୀବରନୀଳସ୍ୱ ଶ୍ରୀମୁଖେ ଚିବୁକ ଧରି ସବୁ ଚୁମ୍ବ ଲଭିବି
ଈକ୍ଷଣ ଶିକ୍ଷଣ ବାଣେ ବିନ୍ଧି ପକା ଦୋଷ କରିଛୁ ମୁଁ ସହିବି ॥
(ଚୌପଦୀଚନ୍ଦ୍ର—ଉପେନ୍ଦ୍ର ଭଞ୍ଜ)

ଅଶୁଭ ନାଶ କରି ଶୁଭରେ ଦୀର୍ଘାୟୁ କରି ରଖିବା ଲାଗି ବହ୍ନିଙ୍କ ସ୍ତୁତି:—

ଅଗ୍ନେ ନକ୍ଷତ୍ରଂ ଅଜରମ୍
ଆ ସୂର୍ଯ୍ୟଂ ରୋହୟସେ ଦିବି ।
ଦଧଜ୍ ଜ୍ୟୋତିର୍ ଜନେଭ୍ୟଃ ॥
ଅଗ୍ନେ କେତୁର୍ ବିଶାମ୍ ଅସି
ପ୍ରେଷ୍ଠଃ ଶ୍ରେଷ୍ଠଃ ଉପସ୍ଥସତ୍
ବୋଧା ସ୍ତୋତ୍ରେ ବୟୋ ଦଧତ୍ ॥
(ଋଗ୍‌ବେଦ)

[ଅର୍ଥ—ହେ ତେଜସ୍ୱିନ୍ ! ତୁମେ ଅଗଣିତବସ୍ତୁସ୍ଥ ତାରକା ଓ ଗଗନପ୍ରଦକ୍ଷିଣକାରୀ ତଥା ଜୀବଜଗତକୁ ଆଲୋକ ବିତରଣକାରୀ ସୂର୍ଯ୍ୟଙ୍କୁ ସୃଷ୍ଟି କରିଛ । ହେ ତେଜସ୍ୱିନ୍ ! ତୁମେ ହିଁ ଜନତାର ଆଲୋକ । ତୁମେ ସର୍ବଶ୍ରେଷ୍ଠ, ସର୍ବପ୍ରେଷ୍ଠ ତଥା ସର୍ବଦା ଆମ ନିକଟରେ ବିଦ୍ୟମାନ ।

ହେ ପ୍ରଭୋ ! ତୁମେ ସ୍ତୁତିକାରୀଙ୍କୁ ମନେ ରଖ ଓ ତାଙ୍କୁ ନବଜୀବନ ଦାନ କର ]

That God, which ever lives and loves
One God, one law, one element,
And one far off divine event,
To which the whole creation moves.
( Lord Alfred Tennyson)

ସାନ୍ଦ୍ରାନନ୍ଦପୁରନ୍ଦରାଦିଦିବିଷଦ୍‌ବୃନ୍ଦୈରମନ୍ଦାଦରା—
ଦାନମ୍ରୈର୍ମୁକୁଟେନ୍ଦ୍ରନୀଳମଣିଭିଃ ସନ୍ଦର୍ଶିତେନ୍ଦୀବରମ୍ ।
ସ୍ୱଚ୍ଛନ୍ଦଂ ମକରନ୍ଦସୁନ୍ଦରଗଲନ୍ମନ୍ଦାକିନୀମେଦୁରଂ
ଶ୍ରୀଗୋବିନ୍ଦପଦାରବିନ୍ଦମଶୁଭସ୍କନ୍ଦାୟ ବନ୍ଦାମହେ ॥
(ଗୀତଗୋବିନ୍ଦ—ଜୟଦେବ)

---